ଅଗଣନ ହତଭାଗାଙ୍କ ପାଇଁ

ଯେଉଁ ସୁଭଗ ନିଜର ଜୀବନ ଦେଇଛନ୍ତି,

ସେହି

**ଭଗବତୀଚରଣ ପାଣିଗ୍ରାହୀଙ୍କ**

ସ୍ମୃତି ଉଦ୍ଦେଶ୍ୟରେ ।

ମନୁଷ୍ୟକୃତ ଦୁର୍ଭିକ୍ଷ ଯେ ପ୍ରାକୃତିକ ଦୁର୍ଭିକ୍ଷଠାରୁ ଅତି ଭୀଷଣ, ତାହା ୧୯୪୩ର ଅବସ୍ଥା ପ୍ରମାଣ କରିଦେଇଛି । ଏହି ଗଳ୍ପ ଗୁଡ଼ିକରେ ମୁଁ ସେହି ଅବସ୍ଥାର କିଞ୍ଚିତ ଆଭାସମାତ୍ର ଦେବାକୁ ଚେଷ୍ଟା କରିଛି ।

ପ୍ରଥମ ଦୁଇଟି ଗଳ୍ପ ଏହା ପୂର୍ବରୁ 'ସହକାର'ରେ ପ୍ରକାଶିତ ହୋଇଥିଲା । 'ସହକାର'ର ସମ୍ପାଦକ ପୁସ୍ତକାକାରରେ ତାହା ପ୍ରକାଶ କରିବାକୁ ଅନୁମତି ଦେଇଥିବାରୁ ମୁଁ କୃତଜ୍ଞ ।

ଲେଖକ

## ମୁକ୍ତି

ବାଲେଶ୍ୱରର କୌଣସି ଗୋଟିଏ ଅନ୍ନଛତ୍ର । ସବୁ ଜାତିର ଶହ ଶହ ଲୋକ ମୁଠାଏ ଭାତ ଖାଇବା ପାଇଁ ଆସି ରୁଣ୍ଡ ହୋଇଛନ୍ତି । ସ୍ତ୍ରୀ ପୁରୁଷ, ବୃଦ୍ଧ ବାଳକ କାହାରି ପ୍ରଭେଦ ନାହିଁ । କାଲି ଏତିକି ବେଳେ ମୁଠାଏ ଖାଇବାକୁ ମିଳିଥିଲା, ପୁଣି ଆଜି ଗଣ୍ଡାଏ ମିଳିବ । କିଏ କେଉଁ ଗାଆଁର ଲୋକ, କାହାର ଜାତି କଅଣ—ସେ କଥା କେହି କାହାକୁ ପଚାରିବା ଦରକାର ନାହିଁ । ଯେ ଯାହାର ଭୋକ ସମ୍ଭାଳିବାରେ ବ୍ୟସ୍ତ ।

ମଧୁର ଆଜି ଅନ୍ନଛତ୍ରକୁ ଆସିବା ବିଳମ୍ବ ହୋଇଯାଇଛି । ସେ କାଲି ଖାଇସାରି ଟିକିଏ ଦୂର ଗାଁକୁ କିଛି ମଗାମଗି କରିବାକୁ ଚାଲି ଯାଇଥିଲା । ସମସ୍ତଙ୍କ ଦଶା ତ ଏକାପରି—କିଏ ବା ଭିକ ଦେବ ? ମଧୁର କେବଳ ବାଟଚାଲିବାହିଁ ସାର ହେଲା । ଯାହାହେଉ, ମନଟା ବୁଝିଗଲା ଯେ, ଆଉ ଯେତେ କାକୁତି ମିନତି କରି ମାଗିଲେ ମୁଦ୍ଧା ମୁଠାଏ ଗୁଣ୍ଡିଲ କି ଅଧଲାଟାଏ ମିଳିବ ନାହିଁ; ତେଣୁ ସେ ତରତର ହୋଇ ଅନ୍ନଛତ୍ରକୁ ଧାଇଁଛି । ସମୟ ଗଡ଼ିଗଲେ ପୁଣି କାଲି ଏତିକି ବେଳଯାଏ ଭୋକ ଉପାସରେ ପଡ଼ିରହିବାକୁ ହେବ ।

ଆସି ଅନ୍ନଛତ୍ରରେ ପହଞ୍ଚିବା ମାତ୍ରକେ ସେ ଦେଖିଲା, ଏକୁଟିଆ ଗଛମୂଳରେ ଗୋଟିଏ ବୁଢ଼ା ବସିଛି । ପାଖରେ ଖପରା ଖଣ୍ଡିଏ ଥୁଆ; ବୁଢ଼ାର ମୁହଁ ତଳକୁ ହୋଇଯାଇଛି । ମଧୁ ଦେଖିଲାକ୍ଷଣି ବୁଢ଼ାକୁ ଚିହ୍ନିପାରିଲା । ପାଞ୍ଚବର୍ଷ କାଳ ସେ ଯାହା ପାଖରେ ରହି ମଣିଷ ହୋଇଛି—ତାକୁ ବା ନ ଚିହ୍ନନ୍ତା କିପରି ? ଆଉ ଥରେ ବୁଢ଼ା ଆଡ଼କୁ ଚାହିଁବାକ୍ଷଣି ତା ମୁଣ୍ଡ ଘୂରିଗଲା ପରି ତାକୁ ଜଣାଗଲା ।

ସତେ ଯେପରି ଗୁରୁଅଡ଼ ଅନ୍ଧାର ହୋଇଯାଉଛି । ଅଜ ତା ପାଦ ତଳେ ଭୂଇଁ ଏପାଖ ସେପାଖ ଦୋହଲିବାରେ ଲାଗିଛି । ସେ ସେଠାରେ ହଠାତ୍ ଲଥ୍‌କିନା ବସି ପଡ଼ିଲା ।

ଦଶବର୍ଷ ତଳର କେତେ କଥା ମଧୁ ମନରେ ଝଲିଗଲା । ସେତେବେଳେ ସେ ପଦନ ରାଉତଙ୍କ ଘରେ ହଳିଆ ରହୁଥିଲା । ଭୋଗରାଇ ଥାନାର ମଙ୍ଗଳପୁର ଗାଁ ; ପଦନ ରାଉତ ସେ ଗାଁର ମାଲଗୁଜାର । ଧନୀ ନ ହେଲେ ମଧ ତାଙ୍କ ସଚ୍ଚୋଟପଣିଆ ଯୋଗେ ଗାଁର ସମସ୍ତେ ତାଙ୍କୁ ଖାତିର କରୁଥିଲେ । ତାର ପାଞ୍ଚବର୍ଷ ରହୁଣି ଭିତରେ ସେ କେବେ ଦେଖି ନାହିଁ ଯେ ରାଉତେ ହଳିଲା ପାଣିରେ ଗୋଡ଼ ଦେଇଛନ୍ତି ; କାନରେ ଶୁଣି ନାହିଁ ଯେ ମାଛଟିଏ ମ ବୋଲି କହିଛନ୍ତି । ସକାଳୁ ଖୁବ୍ ଅନ୍ଧାରରୁ ଉଠି କେତେ ଯେ ସ୍ତବ ସ୍ତୁତି ପଢ଼ନ୍ତି, କେତେ ଯେ ଭଗବାନଙ୍କ ନାମ ନିଅନ୍ତି, ତାର ସୀମା ନାହିଁ । ସବୁବେଳେ 'ହରି ହେ ରାଧାମାଧବ'—ଏ ସବୁ କଥା ତ ତାଙ୍କ ତୁଣ୍ଡରେ ବସା ବାନ୍ଧିଥାଏ । ମଧୁର ମନେ ପଡ଼ିଲା—ଯେଉଁଦିନ ତାଙ୍କ ପାଚିଲା କ୍ଷେତରେ କାହାର ଗୋଟାଏ ବଳଦ ପଶି କ୍ଷେତ ଉଜାଡ଼ୁଥିଲା, ମଧୁ ବଳଦକୁ ହଟୁଡ଼ାଇ ଦେବାକୁ ଯାଇ କସିକରି ଗୋଟାଏ ବଡ଼ ପାହାର ବସାଇ ଦେଇଥିଲା । ସାଙ୍ଗେ ସାଙ୍ଗେ ରାଉତେ ତା ପାଖକୁ ଦଉଡ଼ିଯାଇ ଛଳଛଳ ଆଖିରେ କହିଥିଲେ, "କେଡ଼େ ପାହାରଟାଏ ଦେଲୁରେ ମଧୁ !" ତାଙ୍କ ସ୍ୱର ସେତେବେଳେ ଏପରି କରୁଣ ଶୁଭୁଥିଲା, ସତେ ଯେପରି ତାଙ୍କ ପିଠିରେ ସେ ପାହାରଟା ବସି ଯାଇଛି । ଆହା ଏପରି ଦୟାଳୁ ଲୋକ !

ପୁଣି ମଧୁର ମନେ ପଡ଼ିଲା, ଯେଉଁଦିନ ବୁଢ଼ୀ ଏ ସଂସାରରୁ ବିଦାୟ ନେଲେ । ଘରେ କାନ୍ଦ ବୋବାଳି ପଡ଼ିଗଲା, ପୁଅ ବୋହୂ ବାଡ଼େଇ କରି ଥୋଡ଼ ହେଲେ । କିନ୍ତୁ ବୁଢା ? ବୁଢ଼ା କେବଳ ହାତ

ଦୁଇଟି ଯୋଡ଼ ଉପରକୁ ଗୁହ୍ଁ ମୁଣ୍ଡରେ ତିନିଥର ଲଗାଇଲେ । ସେତେବେଳେ ତାଙ୍କ ପାଟିରୁ ଖାଲି ବାହାରିଥିଲା—ହରି ହେ ତୁମ ଦୟା ।

ସେଇ ରାଜତ ବୁଢ଼ା, ଯାହାର ଘରଦ୍ୱାର, ପାଞ୍ଚ ମାଣ ଗୁପ, ପୁଅ ବୋହୂ ସେ ଆଜ ଏଠି ? ଏହା କଣ ସତ ?

ମଧୁ ଆଉ କିଛି ଭାବିପାରିଲା ନାହିଁ, ପୁଣି ଥରେ ତା ମୁଣ୍ଡ ଘୂରିଗଲା । ତାର ହୋସ ହେଲା ଯେତେବେଳେ, ସେତେବେଳେ ଦେଖିଲା, ପାଖରେ ଜଣେ ବାବୁ ଠିଆ ହୋଇ ଡାକୁଛି, 'ଅରେ, ତୋ ଖପୁରି ଦେଖା, ଭାତ ଖାଇବୁ ନାହିଁ ?'

ସେ ତାର ପୂର୍ବ ଅଭ୍ୟାସ ମତେ ଖପରଖଣ୍ଡି ବଢ଼ାଇଦେଲା । ଭାତ ଦିଅ ଦିବାରୁ ଖାଇଲା; ମାତ୍ର ସେତେବେଳକୁ ତାର ଭୋକ ନ ଥିଲା କି ଭାତ ଡାଲି ଅଟରେ ଆଉ ସୁଆଦ ଲାଗିଲା ନାହିଁ ।

× × × ×

ପ୍ରକୃତରେ ପଦନ ରାଜତ ଧନୀ ନ ଥିଲେ ମଧ୍ୟ କୌଣସି ଗରିବ ନ ଥିଲା । ତାର ଯାହା ଗୃହଜମି ଥିଲା, ସେଥିରେ ଦୁଃଖେ କଷ୍ଟେ ବର୍ଷଟି ଚଳିଯାଏ । ଘରେ ପୁଅ ଓ ବୋହୂ । ସ୍ତ୍ରୀ ବହୁତ ଦିନ ହେଲା ବିଦାୟ ନେଇଛି । ବାରମାସଯାକ ଗୋଟିଏ ଗୃହକର ରହି ଗୃହ କାମ କରେ । ବୁଢ଼ା ସକାଳୁ ସଞ୍ଜଯାଏ ଗୃହକର ସହିତ ବିଲବାଡ଼ି କାମରେ ଲାଗିଥାଏ । ବିଲରୁ ଧାନଗଣ୍ଡାକ ଆସେ—ବାଡ଼ିରୁ ସାରୁ, ଅଳୁ, ବାଇଗଣ ଇତ୍ୟାଦି ଆସିଲେ ବୁଢ଼ାର ଆଉ ଚିନ୍ତା କଣ ?

ସୁଖେ ଦୁଃଖେ ବୁଢ଼ାର ଏହିପରି ଷାଠିଏଟି ବର୍ଷ କଟିଥିଲା, ଆଉ କେତୁଟା ବା ଦିନ ? ବୁଢ଼ା ଭାବିଥିଲା, ତାର ଶେଷ ସମୟ ମଧ୍ୟ ଏହିପରି ଅସିଯିବ । ମାତ୍ର ବିଧାତା ତା ସହିଲା ନାହିଁ । ଗଲା ବର୍ଷ ଝଡ଼ତୋଫାନରେ ଗାଁର ସବୁ ଘରଦ୍ୱାର ଭାଙ୍ଗିରୁଜି ଗଲା, ବିଲର ଫସଲ

ସବୁ ଭଜାଡ଼ି ଗଲା । ଯେ ଯେପରି ଘରେ କିଛି କିଛି ଧାନ ଗଣ୍ଡିଏ ଲୁଚାଇ ରଖିଥିଲେ, ତାହା ଅଧିକାଂଶ ନଷ୍ଟ ହୋଇଗଲା । ନଈ ପୋଖରୀର ପାଣି ପଚି ଦୁର୍ଗନ୍ଧ ହେଲା । ଗୁହାଳରେ ଗାଈ ଗୋରୁ, ଛେଳି ମେଣ୍ଢା, ମୋଳ ପୋକ ମରି ସଢ଼ିଲେ । ଦିନେ ଦୁଇଦିନ ହାହାକାରରେ କଟିଲା । ଭୋକ ଉପାସରେ ରହି, ହଇଜାରେ ପଡ଼ି ଗୁହୁଁ ଗୁହୁଁ ଆଖି ଆଗରେ ଲୋକ ମରି ଶୋଇଲେ । ଶେଷକୁ ଅନ୍ୟ ଉପାୟ ନ ଦେଖି ଜଣ ଜଣ ହୋଇ ସେ ଗାଁ ଛାଡ଼ି ପଳାଇବାକୁ ଲାଗିଲେ ।

କିନ୍ତୁ ସାଉଁତ ବୁଢ଼ା ଗଲା ନାହିଁ—ଗାଁ ମୁଣ୍ଡର ଗୋଟିଏ ଗଛ ମୂଳେ ପଡ଼ି ରହିଲା । ପୁଅ ଯେତେ ବୁଝାଇଲା, ବୋହୂ ଯେତେ କାନ୍ଦା-କଟା କଲା, ସେ ଶୁଣିଲା ନାହିଁ । କହିଲା, ଏ ମୋର ସାତପୁରୁଷର ଭିଟାମାଟି—ମଲେ ଏଇଠି ମରିବି, ଆଉ ଯିବି କୁଆଡ଼େ ?

ମାତ୍ର ବୁଢ଼ାର ଏ ଦମ୍ଭ ବେଶୀ ଦିନ ରହିଲା ନାହିଁ । ଭୋକ ଦାଉ ଲୋକ କେତେଦିନ ସମ୍ଭାଳିପାରେ ? ଦିନେ ସକାଳୁ ଦେଖା ଗଲା, ବୋହୂ ରାତରୁ କୁଆଡ଼େ ଚାଲିଯାଇଛି । ପୁଅ ଯେତେବେଳେ ଏ ଖବର ବୁଢ଼ାକୁ ଦେଲା, ବୁଢ଼ା କେବଳ କହିଥିଲା—ହରି ହେ, ତୁମ ଦୟା ।

ଆଉ ଦୁଇଦିନ କଟିଗଲା । ଦିନେ ପୁଅ ଆଉ ଶୋଇବା ଜାଗାରୁ ଉଠିଲା ନାହିଁ । ବୁଢ଼ା ତା ପାଖକୁ ଗଲା । ଦେଖିଲା, ହାଡ଼ା ବାନ୍ତିରେ ସେ ନିସ୍ତାନ୍ତ । ତାକୁ ବହୁତ କଷ୍ଟରେ ଉଠାଇ ସେ ଅନ୍ୟତ୍ର ଶୁଆଇଲା, ତା ଲୁଗାପଟା ସଫାସୁତୁରା କରିଦେଲା । ପାଖରେ ବସି ଗୋଡ଼ହାତ ଆଉଁସି ଦେଲା ।

ସନ୍ଧ୍ୟାବେଳକୁ ସବୁ ଶେଷ ହୋଇଗଲା । ବୁଢ଼ା ଆଖି ଆଗରେ ଏକମାତ୍ର ପୁଅ ନ ଖାଇ ନ ପିଇ ହଇଜାରେ ପଡ଼ି ଆଖି ବୁଜିଲା । ସବୁଦିନ ଝୁରିହେବା ପାଇଁ ପଡ଼ି ରହିଲା କେବଳ ବୁଢ଼ା । ତା ଆଖିରୁ

ଟୋପାଏ ହେଲେ ଲୁହ ବୋହିଲା ନାହିଁ । ଲୁହ ତାର ଏ ଦାରୁଣ କଷ୍ଟରେ ଶୁଖି ଯାଇଥିଲା । ତାର ପଞ୍ଜରା ହାଡ଼ ଭେଦ କରି କେବଳ ଏପଦ କଥା ବାହାରୁଥିଲା—ହରି ହେ, ତୁମ ଦୟା ।

ବୁଢ଼ାର ଗାଁ ମୋହ ତୁଟିଗଲା । ସେ ଗଛମୂଳ ତାକୁ ଆଉ ଟାଣି ରଖିପାରିଲା ନାହିଁ । ସେ ତାର ଚୁଣ୍ଡା କନାଖଣ୍ଡି ଅଣ୍ଟାରେ ଗୁଡ଼ାଇ ବାଡ଼ଖଣ୍ଡିକ ଧରି ବାହାରିଲା ଲକ୍ଷ୍ୟଶୂନ୍ୟ ଭାବରେ ।

କେଉଁଦିନ କେଉଁଠି ଖାଇ, କେଉଁଦିନ ବା ଉପାସ ରହି ବୁଲି ବୁଲି ସେ ଆସି ସହରରେ ପହଞ୍ଚିଲା । ସେତେବେଳକୁ ତା ଆଖିକୁ ଭଲ ଦିଶୁନାହିଁ, କି କାନକୁ ଭଲ ଶୁଭୁ ନାହିଁ । ନିଜକୁ ଭୁଲି ଏଣେତେଣେ ସେ କେବଳ ବୁଲିବାକୁ ଲାଗିଲା ଠିକ୍ ଗୋଟାଏ ପାଗଳ ପରି ।

ଦୁଇଦିନ ହେଲା ପେଟକୁ ଦାନା ଯାଇ ନାହିଁ । ବୁଢ଼ା ଯେତେ-ବେଳେ ଯାହାକୁ ମୁଠାଏ ଖାଇବାକୁ ମାଗିଛି ସେତେବେଳେ ସେ କେବଳ ନାହିଁ ଶବ୍ଦ ଶୁଣିଛି, ମୁହୂର୍ତ୍ତିକ ପାଇଁ ତା ଆଖିକୁ ସବୁ ଅନ୍ଧାର ଦେଖାଯାଇଛି । କେତେବେଳେ ସେ ଥକ୍କା ମାରି ବସି ପଡ଼ୁଛି, କେତେବେଳେ ବା ଉଠି ବାଟ ଚାଲୁଛି । ସେ ତା ଆଖିରେ ଦେଖୁଛି, ସହରର ସମସ୍ତେ ଧାଁ ଧପଡ଼ କରୁଛନ୍ତି । ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ । କେବଳ କିଛି କାମ ନାହିଁ ତାର । ଗୁଡ଼ିଆ ଦୋକାନରେ ଥାଳି ଥାଳି ମିଠେଇ ଜଳଖିଆ ହୋଇଛି, ଅଥଚ ସେ ପୋଡ଼ା ପେଟକୁ ସମ୍ଭାଳିବାପାଇଁ ଗୋଟାଏ ହେଲେ ସେଥିରୁ ପାଇପାରୁ ନାହିଁ । ବୁଢ଼ା ଦଣ୍ଡେ ଦୋକାନ ସାମନାରେ ଠିଆ ହେଲା; ଇଚ୍ଛା ହେଲା ଦୁଇ ହାତରେ ଯେତେ ଧରିପାରିବ ସେତେ ଧରି ଅଣି ପାଟିରେ ପୂରାଇ ଦେବ ; ମାତ୍ର ତାର ସେ ସାଧ କାହିଁ ? ଅଜାଣତରେ ହାତ ଦୁଇଟା କେବଳ ମୁଠା ହୋଇଗଲା ।

ଗୋଟାଏ ହୋଟେଲ ସାମନା, ଭିତରେ ଭାତ ଟେକମକ

ଫୁଟୁଛି । ବାସନା ମଧ୍ୟ ସେ ବାରିପାରୁଛି । ଯେ ଦେଖିଲା, ଏକା ସେ ନୁହେଁ, ତା'ପରି ଆହୁରି କେତେ ହତଭାଗା ସେଠାରେ କେବଳ ଗୁହ୍ନାଁ ଠିଆ ହୋଇଛନ୍ତି । ବିଶ୍ୱାସ, କେହି ଯଦି ଖାଇସାରି ଅଇଣ୍ଠାପତ୍ର ପଦାକୁ ଫିଙ୍ଗିଦେବ, ତେବେ ତାକୁ ଗୃଣ୍ଟି ଅନ୍ତତଃ ଜିଭକୁ ସାନ୍ତ୍ୱନା ଦେବେ । କେଉଁଠି ହୋଟେଲ ଗୃହର ଅଇଣ୍ଠାପତ୍ର ଯଦି ଆଣି ପକାଇଦେଲା, ତେବେ କୁକୁର ସହିତ ଲାଗିଯାଉଛି ମଣିଷର ଲଢ଼େଇ । ସେ ତ ବୁଢ଼ା, ଅକର୍ମଣ୍ୟ ; ତେଣୁ ତାର ଗୁହ୍ନାଁ ଦେଖିବାହିଁ କେବଳ ସାର ।

ବୁଢ଼ା ଦିନଯାକ ଶକ୍ତି ମୁତାବକ ବୁଲେ । ରାତି ହେଲେ ସେ କୌଣସି ଜାଗାରେ ଶୋଇପଡ଼େ । ସେତେବେଳେ ଗୋଟାଏ ଦୀର୍ଘ ନିଶ୍ୱାସ ତା ଛାତି ଫଟାଇ ବାହାରି ଆସେ । ସେ ମନରେ ଭାବେ— ସମସ୍ତେ ତ ସୁଖରେ ଅଛନ୍ତି, ଖାଉଛନ୍ତି, ପିଉଛନ୍ତି, ବେପାର ବଣିଜ କରୁଛନ୍ତି, ଚାଲିବୁଲି ହସ ଖୁସିରେ ତାଙ୍କ ଦିନ କଟୁଛି; ଆଉ ତାର ଅବସ୍ଥା କାହିଁକି ଏପରି ? ତା ପେଟ ଯେ ପୋଡ଼ିଯାଉଛି, ଗଣ୍ଡାଏ ଅଇଣ୍ଠା ଭାତ ବି ମିଳୁ ନାହିଁ । ଈଶ୍ୱରଙ୍କର କଣ ଏଇ ଦୟା ! ରାଧାମାଧବଙ୍କର କଣ ଏହି ବରାଦ !

× × × ×

ଆରଦିନ ମଧୁ ଆଗରୁଁ ଆସି ଅନ୍ନଛତ୍ର ପାଖରେ ବସି ରହିଛି । କାଲି ସେ ଖାଇସାରି ରାଉତ ବୁଢ଼ାଙ୍କୁ ଯେତେ ଖୋଜିଲା ଆଉ ପାଇଲା ନାହିଁ । ଆଜି ଯିମିତି ହେଲେ ତାଙ୍କୁ ଖୋଜି ବାହାର କରିବ । ଅନ୍ତତଃ ଗୋଡ଼ ତଳେ ଗୋଟାଏ ମୁଣ୍ଡିଆ ନ ମାରିଲେ ତାର ନିସ୍ତାର ନାହିଁ । ଆହା, ଦେବତା ଭଳିଆ ଲୋକଟିଏ ସିନା !

ଯେତେବେଳେ ସମସ୍ତେ ଖାଇ ବସିଲେ; ସେତିକିବେଳେ ମଧୁ ରାଉତବୁଢ଼ାର ସନ୍ଧାନ ପାଇଲା । ନିଜ ଭାତହାଣ୍ଡିଟି ଧରି ସେ

ଉଠି ବୁଢ଼ା ପାଖକୁ ଗୁଲିଗଲା । ବୁଢ଼ାର ଦୁଇ ଗୋଡ଼କୁ ଅଇଣ୍ଠା ହାତରେ କୁଣ୍ଢାଇ ଧରି ଆଗ ଲମ୍ବ ହୋଇ ପଡ଼ିଗଲା । ବୁଢ଼ା ମୁଠାଏ ଭାତ ପାଟିକୁ ନେଉଥିଲା, ତା ହାତରୁ ଭାତ ମୁଠାକ ଖସି ପଡ଼ିଲା! ସେ ମଧକୁ ଅଇଣ୍ଠା ହାତରେ ଟେକି ଟିକାଏ ଗୁହିଁଲା । ତା ମୁଣ୍ଡରେ ହାତ ବୁଲାଇ ସ୍ନେହରେ କହିଲା, "ମଧୁ ? ତୁ ଏଠି ?" ବୁଢ଼ାର ଆଖି ଛଳଛଳ ହୋଇଗଲା । ସେ ଆଉ କିଛି କହିପାରିଲା ନାହିଁ । ତା ପାଟିରୁ ପୁଣି ଥରେ ଅଜ୍ଞାତରେ ବାହାରି ପଡ଼ିଲା—ହରି ହେ, ତୁମ ଦୟା ।

ଦୁଇଦିନ ପର୍ଯ୍ୟନ୍ତ ମଧୁ ଆଉ ଅନ୍ନଛତ୍ରରେ ବୁଢ଼ାକୁ ଦେଖିବାକୁ ପାଇଲା ନାହିଁ । ତାର ମନ ଗୋଳେଇ ଘାଣ୍ଟି ହେଲା । ସେ ସ୍ଥାନ ତାକୁ ଆଉ ଭଲ ଲାଗିଲା ନାହିଁ । ଭାତଗୁଡ଼ାକ ତା ପେଟରେ ଯେପରି ଖଜବଜ ହୋଇ ଉଠିଲା ।

ଶେଷକୁ ମଧୁ ଆଉ ସମ୍ଭାଳିପାରିଲା ନାହିଁ । ସେ ବୁଢ଼ାର ସନ୍ଧାନରେ ତାର ଅତି ପ୍ରିୟ ଅନ୍ନଛତ୍ର ଛାଡ଼ି ବୁଲି ବାହାରିଲା । କେତେ ଗଳି, କେତେ କନ୍ଦି ବୁଲିଲା, ଯେଉଁ ଠିଁଏଉଁ ଭିକାରୀକୁ ଦେଖିଲା, ତା ମୁହଁକୁ ବଡ଼େ ଗୁହିଁଲା । ଏଠି ଯେଠି ଶହ ଶହ ଫଦନା ସଜତ ବୁଲୁଛନ୍ତି, କିଏ ରାସ୍ତା କଡ଼ରେ ପଡ଼ି ରହିଛି, କାହାର ଊର୍ଦ୍ଧ୍ୱଶ୍ୱାସ ବହିଲାଣି, କିଏ ବାଳକରେ ହାତ ପତାଇ ମୁଠାଏ ଖାଇବାକୁ ମାଗୁଛି; ମାତ୍ର ପାଟି ଫିଟୁ ନାହିଁ । ମଧୁ ଯେ ଏ ସମସ୍ତଙ୍କ ଭିତରୁ ଜଣେ, ଏହା ଦେଖି ଦେଖି ତା ଆଖି ପଥର ହୋଇ ଯାଇଛି । ତାର ଲୋଡ଼ା ଫଦନା ସଜତ, ମଙ୍ଗଳପୁରର ସେହି ବୁଢ଼ା ଫଦନା ସଜତ ।

ଶେଷରେ ମଧୁ ବୁଢ଼ାର ଦେଖା ପାଇଲା ଗୋଟାଏ କୋଠା ଘରର ସାମନାରେ । ଘରଟି ଜଣେ ବଡ଼ଲୋକଙ୍କର । ବୋଧହୁଏ ଭିତରେ କୌଣସି ନିମନ୍ତ୍ରଣ ହେଉଛି । ବହୁତ ଲୋକ ଭିତରକୁ

ଯା ଆସ କରୁଛନ୍ତି; ଖିଆପିଆ ଚାଲିଛି, ନିଅ ଆଣ କୋଳାହଳରେ ଦାଣ୍ଡ ଫାଟି ପଡ଼ୁଛି।

ମଧୁ ଦେଖିଲା, ଆଉ ଶହ ଶହ ଭିକାରୀଙ୍କ ପରି ବୁଢ଼ା ଦାଣ୍ଡର ପଣ୍ଡାତଳେ ଗୋଟାଏ କଡ଼ରେ ପଡ଼ିରହିଛି। ପିଣ୍ଡା ଉପରୁ ଜଣେ ଦୁଇଜଣ ବାବୁ ନ ଦେଖି ଛେପ ଖଙ୍କାର ତା ଉପରକୁ ପକାଇ ଦେଇ ଗଲେଣି। ବୁଢ଼ାର ଆଉ ଉଠିବାର କ୍ଷମତା ନାହିଁ। କେବଳ ସମସ୍ତଙ୍କୁ ଜଳଜଳ ଚାହିଁ ରହୁଛି, ଆଉ ହାତ ପତାଇ ପେଟ ପାଟି ଦେଖାଉଛି। ଏହା ଦେଖି ମଧୁ ଆଖିରୁ ଦୁଇ ଧାର ଲୁହ ବୋହି-ଗଲା। ସେ ବୁଢ଼ା ପାଖରେ ବସିପଡ଼ିଲା। ତା ପିଠିରେ ହାତ ବୁଲାଇ ବୁଲାଇ କହିଲା, "ତୁମେ ଏଠାକୁ ଆସିଲ କାହିଁକି ?"

ବୁଢ଼ା ଥରେ ନିଜ ମୁଣ୍ଡରେ ହାତ ମାରିଲା, ବୋଧହୁଏ କରମକୁ ଦେଖାଇଦେଲା। ତା ପରେ ଅଧେ ହାତ ଠାରି ଅଧେ ଝୁନେଇ ଝୁନେଇ ଯାହା କହିଲା, ତାର ଅର୍ଥ—ଏଠାରେ ନିମିତ୍ତ୍ୟ, ଭଲ ଭଲ ଡାଲି ତରକାରୀ ହେଉଛି, ବହୁତ ଖିଆପିଆ ଚାଲିଛି। ମୁଠାଏ ଅଇଣ୍ଠା ମିଳିଗଲେ ବି ମୁଁ ସନ୍ତୁଷ୍ଟ ହେବି। ବୋଧହୁଏ ବର୍ତ୍ତମାନ ମିଳିବ।

ମାତ୍ର ଅଇଣ୍ଠା ମିଳିଲା ନାହିଁ। ଦିନ ଯାଇ ସନ୍ଧ୍ୟା ହେଲା, କ୍ରମେ ରାତି ହେଲା, ନିମିତ୍ତ୍ୟର କୋଳାହଳ ସବୁ ବନ୍ଦ ହୋଇଆସିଲା। କ୍ରମେ ବୁଢ଼ାର ଆଶା ମଧ୍ୟ ଲୋପ ପାଇବାକୁ ଲାଗିଲା। ପାଟି ଶୁଖି ଅଠା ହୋଇଗଲା। ଦେହ ଅବଶ ହୋଇ ପଡ଼ିଲା। ବୁଢ଼ାର ବାହ୍ୟ ଚେତନା ଯେତିକି କମିଆସିଲା ଓଠ ସେତିକି ମେଲା ହୋଇ ଭାତ ପାଇଁ ଅଳି କଲା।

ମଧୁ ଦେଖିଲା, ଶେଷ ସମୟ ଉପସ୍ଥିତ। କାନ ପାଖରେ ମୁହଁ ରଖି ସେ କହିଲା 'ରାଧା ମାଧବ'। ବୁଢ଼ାର ପାଟିରୁ କିନ୍ତୁ ବାହାରିଲା,

ଭୂ···ତ । ମଧୁ ଅନ୍ୟ ଉପାୟ ନ ଦେଖି ଭାବିଲା, ଅଉ ବା କେତେବେଳ ? ତେଣୁ ସେ କାଗଣ ନ କରିବା ଇଚ୍ଛାରେ ବୁଢ଼ାର କାନ ପାଖରେ କହିଲା—"ଭୂତ ଅସୁଛି ।" ବୁଢ଼ାର ଆଖି ଉଜ୍ଜ୍ୱଳ ହୋଇ ଉଠିଲା, ସର୍ବାଙ୍ଗ ତାହାର ଥରିଗଲା । ଯେମିତି ଭୂତର ନାଁ ଶୁଣି ତାର ଚମକ ଭାଙ୍ଗିଯାଇଛି । ଅଶବ୍ଦ ଶବ୍ଦରେ ତା ପାଟିରୁ ବାହାରି ପଡ଼ିଲା—ଭୂ···ତ ; ମାତ୍ର ତା କ୍ଷଣକ ପାଇଁ । ମୃତ୍ୟୁ ପୂର୍ବରୁ ବୁଢ଼ାର ଓଠ ପୁଣି ଥରେ ମେଲା ହୋଇଗଲା—ରାଧାମାଧବ ନାମ ନେବା ପାଇଁ ନୁହେଁ, ଭୂତ ଆଶାରେ ।

ମଧୁ ମୁଣ୍ଡରେ ହାତ ଦେଇ ପାଖରେ ବସି ରହିଲା । ଅହା, ଚିର ଈଶ୍ୱରବିଶ୍ୱାସୀ ସରଳ ଲୋକ !

ପରଦିନ ସକାଳ । କଟକରୁ ମନ୍ତ୍ରୀ ଆସିଛନ୍ତି ଅଞ୍ଚଳଟି ଦେଖିବାକୁ । ତାଙ୍କର ମଠରେ ଯିବା ପାଇଁ ରାସ୍ତା ଦୁଇ ପାଖ ସଫା ରହିବା ଦରକାର । ପୁଲିସର କଡ଼ା ପହରା । ମେହେନ୍ତରମାନେ ରାସ୍ତା ସଫା କରିବାରେ ବ୍ୟସ୍ତ । ଯେତେବେଳେ ସେମାନେ ମଧୁ ପାଖରେ ଆସି ପହଞ୍ଚିଲେ, ଗୋଇଠା ଖାଇବା ଭୟରେ ମଧୁ ଖସିଗଲା ଦୂରକୁ ଦୂରକୁ । ମେହେନ୍ତରମାନେ ବୁଢ଼ା ରାଉତର ଶବ ରାସ୍ତାକଡ଼ ତୋଟାଏ ଖାଲକୁ ଗଡ଼ାଇ ପକାଇଲେ—ମନ୍ତ୍ରୀ ଦେଖି ନ ପାରିବେ ବୋଲି ।

---

## ରାଜକୁମାର

ଦିନେ ନୁହେଁ, ଦୁଇଦିନ ନୁହେଁ, ତିନିଦିନ ମଧ୍ୟ ନୁହେଁ, ଯେତେବେଳେ ଲଗ ଲଗ ଚାରିଦିନ ଚାରିରାତି ପେଟକୁ ମୁଠାଏ ହେଲେ ଦାନା ମିଳିଲା ନାହିଁ, ସେତେବେଳେ ଚୁରିଆ ଓ ସୁମାକୁ ଚାରିଆଡ଼ ଅନ୍ଧାର ଦେଖାଗଲା । ଦିନେ ଯେ ଅବସ୍ଥା ଏମିତି ହେବ, ଚୁରିଆ ଆଗରୁ ତାହା କେତେଥର କହିଛି, ଥରକୁଥର ସେହି ଚିନ୍ତାରେ ପାଗଳ ପରି ହୋଇଯାଇଛି । ମାତ୍ର ସେତେବେଳେ ସୁମା ? ସୁମା ଖାଲି ସେ କଥାକୁ ହସି ଉଡ଼ାଇ ଦେଇଛି । ଦୁଇଟା ବୋଲି ପେଟ, ବାଙ୍କା ରାଜକୁମାର, ସେ ବା କଣ ଖାଇବ ? ଦୁଇବର୍ଷର ଛୁଆ ସେ । ଦୁଇଟା ପେଟପାଇଁ କଣ ଯେମିତି ହେଲେ ଦିନକୁ ବକତେ ଲେଖାଏଁ ଯୋଗାଡ଼ କରି ହେବ ନାହିଁ ? ନ ହେଲା ଏବେ ସବୁଦିନ, ମଝିରେ ମଝିରେ ଦିନେ ଦିନେ ବା ବନ୍ଦ ହୋଇଗଲେ କ୍ଷତି କଣ ? ରାଜକୁମାର ପାଇଁ ଗଣ୍ଡାଏ ସବୁଦିନଲାଗି ସାଇତି ରଖିପାରିଲେ ହେଲା । ଭାତ ନ ମିଳିବ, ମାଣ୍ଡିଆ ଜାଉ ତ ଅଛି; ନିହାତି ତା ଯଦି ନ ମିଳିଲା, ବଣରେ କରବା, ଓଲୁଅ, ପୋଖରୀରେ କଇଁମୃଣ୍ଡା ତ ଅଛି । କେଇଟା ମାସ କଣ କଟିଯିବ ନାହିଁ ?—ନିଶ୍ଚୟ କଟିଯିବ ।

ଚୁରିଆ ସୁମାର ଏ କଥାରେ ଅବଶ୍ୟ ମୁହଁରେ କିଛି ଜବାବ ଦିଏ ନାହିଁ; କିନ୍ତୁ ମନେ ମନେ ଜାଣେ, ସବୁବେଳେ ମଧ୍ୟ ମନରେ ସେଇ ଚିନ୍ତା ଗୋଳେଇ ଘାଣ୍ଟି ହେଉଥାଏ—ଦିନ କଟିବ କିପରି ? ବର୍ଷଟା ସେ କଣ ଚଳେଇ ନେଇପାରିବ ? ଏକୁଟିଆ ସେ ହୋଇ-ଥିଲେ ଚିନ୍ତା କଣ ଥିଲା ? ଯୁଆଡ଼ିକି ଇଚ୍ଛା ତେଣେ ଚାଲିଯାଇ ପାରନ୍ତା; କିନ୍ତୁ ସୁମା ଆଉ ରାଜକୁମାର ? ତାଙ୍କର ଲାଗି ତ ଯେତେ ଭାବନା । ଅତି କଷ୍ଟରେ ସୁମାକୁ ବା ସେ ସାଙ୍ଗରେ ନେଇପାରନ୍ତା;

କିନ୍ତୁ ରାଜକୁମାର ? ଦୁଇବର୍ଷ ଆଗରୁ ଯେତେବେଳେ ଏ ପୃଥ୍ବୀ ସଂସାରକୁ ସେ ଆସି ନ ଥିଲା, ସେତେବେଳେ ତା ପାଇଁ କେତେ ଭାବନା, କେତେ ଚିନ୍ତା; ବାର ବ୍ରତ, ତେର ଉପାସ । ଯେତେବେଳେ ଆସିଲା, ସେତେବେଳେ ମଧ୍ୟ ସେ ଘରକୁ କମ୍ ହସାଇ ନାହିଁ । ତାର ସେହି କଳା ମୁଚୁମୁଚୁ ଦେହର ଆଲୁଅରେ ଗୁରୁଆ ଓ ଓ ସୁମାଙ୍କ ମୁହଁ ଉଜ୍ଜଳ ଉଠିଛି । ନିତମ୍ବଳ୍ ଆର ଭଙ୍ଗା କୁଡ଼ିଆ ଘରେ ତାର ଜନ୍ମ ହେଲେ ମଧ୍ୟ ତା ନାଁ ରଖାଯାଇଛି 'ରାଜକୁମାର' । ରାଜକୁମାରର ଜନ୍ମ ପାଇଁ ଯେତିକି ଆଡ଼ମ୍ବର ହୋଇଥାଏ, ଏହାର ଜନ୍ମପାଇଁ ବାହ୍ୟିକ ନ ହେଲେ ମଧ୍ୟ କଣ ସେତିକି ଆୟୋଜନ ହୋଇ ନାହିଁ ? ବରଂ ତା ଅପେକ୍ଷା ତେର ବେଶୀ ଆୟୋଜନ କରଥିଲେ—ଗୁରୁଆ ଆଉ ସୁମା ନିଜ ଅନ୍ତର ମଧ୍ୟରେ । ଆଜି ଆଜି ? ଯାହାକୁ ପାଇବାପାଇଁ ସେମାନେ ଏତେ ବ୍ୟାକୁଳ ହେଉ- ଥିଲେ, ତାକୁ ପାଇ ଆଜି ମୁଣ୍ଡ ଉପରେ ବୋଝ ଲଦା ହେଲାପରି ବୋଧହେଉଛି । ପେଜ ପାଣି ଟୋପାଏ ତା ପେଟକୁ ଦେଇ ନ ପାରି ଅନେକ ସମୟରେ ଭାବୁଛନ୍ତି, ସେ ନ ଆସିଥାଆନ୍ତା କି ? ଦୁଇବର୍ଷ ଆଗରୁ ସେମାନେ ତ ଭଲ ଥିଲେ ।

ଗୋଟି ଗୋଟି ହୋଇ ଗୁରୁଆର ଅତୀତ କଥା ମନରେ ଖେଳିଗଲା । ମା ବାପ ଛେଉଣ୍ଡ ପିଲା ସେ, ନିଜ ଭାଗ୍ୟ ଉପରେ ନିର୍ଭର କରି ପାଚୁପର୍ଯ୍ୟନ୍ତ ଖଟି ଖଟି ସେ ପନ୍ଦରଟି ବର୍ଷ ବିତେଇ ଦେଲାଣି । ହଁ, ପନ୍ଦର ତ ନିଶ୍ଚୟ, ଯେତେବେଳେ ତାର ମା ବାପ ମରିଯାନ୍ତି ସେତେବେଳେ ତାକୁ ମୋଟେ ବାରବର୍ଷ । ସେହିଦିନୁ ସେ ପନ୍ଦର ଥର ବାଲିକୁ ହଳ ନେଇଛି, ପନ୍ଦର ଥର ଧାନ ଅମଳ କରିଛି। ଏହା ଭିତରେ କେତେ ପରିବର୍ତ୍ତନ ହୋଇ ଯାଇଛି, ତା ଘରକୁ ସୁମା ଆସିଛି, ତାର ପ୍ରତ୍ୟେକ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଗୋଟିଏ

ସାଥୀ ମିଳିଛି ; ସୁଖଦୁଃଖ ହାନିଲାଭ ସବୁଥିରେ ଭାଗ ନେବାପାଇଁ ତା ପାଖକୁ ପାଖ ଲଗି ଠିଆ ହୋଇଛି ସୁମା ।

ଜମି ବା କେତେ ? ଗୁରୁଅ ହାତରେ ତାର ସ୍ତ୍ରୀର ଗୁଣ ଜମି ପଡ଼ିଲେ, ସେ ତାକୁ ମଧ୍ୟ ପଡ଼ିଆ ପକାନ୍ତା ନାହିଁ । ମାଣ ମିଳୁଛି କୁଅଡ଼ୁ ? ଯାହା ବା ଜମି ଅଛି, ସେଥିରେ ଖରାବର୍ଷା, ଶୀତକାକରରେ ଖାଟି ଖାଟି ସେ ଫସଲ ଅମଳ କରିବ । ଅଧେ ଦେଇ ଆସିବ ରଜା ଖମାରରେ । ବାକୀ ଅଧକ ?—ପ୍ରକୃତରେ କଣ ଅଧେ ରହେ ? କେଉଁ ବର୍ଷ ପାଏ, କେଉଁ ବର୍ଷ ବା ଅଧପାଏ—ଯାହା ତା ଭାଗ୍ୟକୁ ମିଳେ, ସେଥିରେ ଅବଶ୍ୟ ତାର ଦୁଇ ତିନି ମାସ କଟିଯାଏ । ସେଥିପାଇଁ ତାଙ୍କର ଦୁଃଖ ନ ଥାଏ କି ଅବଶୋଷ ନ ଥାଏ । ସେ ଯାଏ ଅନ୍ୟର ମୂଲ ଲାଗି । ସୁମା ଯାଏ ବଣକୁ କାଠ, ପତର ଯୋଗାଡ଼ କରିବାପାଇଁ । ଗୁରୁଅର ମୂଲ, ସୁମାର ରୋଜଗାର ଯଥାତଥା ଗତ କେତୋଟି ବର୍ଷ ଚଳାଇ ଆଣିଛି—ଖୁବ୍ ଆନନ୍ଦ, ଖୁବ୍ ହସଖୁସିରେ ।

କିନ୍ତୁ ଏ ବର୍ଷ ? ଏ ବର୍ଷ ବିଧାତାର ଏ କ୍ରୂରଦୃଷ୍ଟି କାହିଁକି ? ଗତବର୍ଷ ପରି ସେ ତ ଏ ବର୍ଷ ଦିନରାତି ଖାଟିଥିଲା । ବହୁତ କଷ୍ଟରେ ମୁଣ୍ଡ ଝାଳ ପାଦରେ ମାରି ବିଲରେ ଧାନଗଛ ଠିଆ କରାଇଥିଲା । ଫସଲ ମଧ୍ୟ ମନ୍ଦ ହୋଇ ନ ଥିଲା । ବର୍ଷକଯାକର ପରିଶ୍ରମର ଫଳ ପାଇଲାବେଳକୁ—ଭାତ ବାଢ଼ି ଟିକି ଖାଇ ବସିଲା ବେଳକୁ ତା ଭାତ ପତର କିଏ ଫିଙ୍ଗିଦେଲା, କୁଆଡ଼ୁ ଅକାଳ ଝଡ଼ ତୋଫାନ ଆସି ଦରପାଚିଲା ଧାନ କେଦାରକୁ ନଷ୍ଟ କରିଦେଇ ଗଲା । ବର୍ଷକ ଯାକର ହାଡ଼ଭଙ୍ଗା ଖଟଣି, ଲହୁଲୁହାଣ ପରିଶ୍ରମ, ସବୁ ଦିନକ ମଧ୍ୟରେ ଶେଷ, ବିଧାତାର ଏ କି କ୍ରୂର କଟାକ୍ଷ !

"ତେବେ ଆଜି ଦିନଟା ମଧ୍ୟ କଣ ସେମିତି ଯିବ ?"—ସୁମାର ସ୍ନେହ କଥା ପଦକରେ ଗୁରୁଅର ଚେତନା ଆସିଗଲା । କଥା

କେତୁଟା କାନକୁ ବଡ଼ କଷ୍ଟ ଶୁଣାଗଲା । ସେ ଟିକିଏ ମୁହଁ ଟେକି ସୁମା ଆଡ଼କୁ ଚାହିଁଲା । ଅଙ୍ଗୁଠିରେ ଗଣି ଦେଖିଲା, ବୁଧ, ଗୁରୁ, ଶୁକ୍ର, ଶନି—ସତେତ ଚାରଦିନ ହୋଇଗଲା ତାଙ୍କ ପେଟକୁ ଗୋଟାଏ ହେଲେ ଦାନା ଯାଇ ନାହିଁ । ସେତିକିବେଳେ ସୁମା ପୁଣି କହିଲା, "ରାଜକୁମାରକୁ ଅନ୍ନ ଦେବ କଣ ? ତାପାଇଁ ସେ ଆଉ କହୁ ନାହିଁ ।" ଗୁରୁଅ ମୁଣ୍ଡ ଘୂରିଗଲା, ସେ ଆଖିଆଗରେ ଦେଖୁଛି, ପିଲାଟା ଦିନକୁଦିନ କିପରି ଶୁଖିଯାଉଛି । ନିଜ ପେଟ ପାଇଁ ନ ହେଉ, ଛୁଆଟାପାଇଁ ସେ ଯେ ମୁଠାଏ କିଛି ଯୋଗାଡ଼ କରିପାରୁ ନାହିଁ, ସେ କଣ ଏଡ଼େ ଅକର୍ମଣ୍ୟ ! ସେ କଣ ଏଡ଼େ ଅପାରଗ !

—୨—

ବହୁ ଯୁକ୍ତିତର୍କ କଥାବାର୍ତ୍ତା ପରେ ଶେଷରେ ଠିକ୍ ହେଲା ଯେ, ଗୁରୁଅ ସହରକୁ ଯିବ । ସେଠାରେ କୁଆଡ଼େ ବାବୁମାନେ ମୁଠି ଚାଉଳ ବାଣ୍ଟୁଛନ୍ତି, ଭାତ ଡାଲି ଖାଇବାକୁ ଦେଉଛନ୍ତି । ଗାଁର ବାରପଣ ତ ସେଠାକୁ ଚାଲିଗଲେଣି । ଆଗରୁ ସେ ଯାଇଥିଲେ ଖୁବ୍ ଭଲ ହୋଇଥାନ୍ତା । କେବଳ ସୁମା ସକାଶେ ସିନା ସେ ରହିଗଲା ! ସୁମା ମନା କରି ନ ଥିଲେ, କାନ୍ଦାକଟା କରି ନ ଥିଲେ, ସେ ତ ଯାଇ ସହରରୁ ଚାଉଳ, ମାଣ୍ଡିଆ ଆଣି ସାରନ୍ତାଣି । ଏଡ଼ୁଟିଏ ହେଲାଣି । ତଥାପି ସୁମାର ପିଲାଳିଆ ଢଙ୍ଗ ଯାଉ ନାହିଁ । ଯେତେ ଥର ଗୁରୁଅ ସହରକୁ ଯିବାକୁ ବସିଛି, ସୁମା ତା ସାଙ୍ଗରେ ଯିବ ବୋଲି ବାହାରୁଛି । ସେ କଣ ଏତେ ବାଟ ଚାଲିପାରିବ ? ବିଶେଷରେ ପୁଅକୁ ଧରି ଯିବ ବା କିପରି ? ଗୁରୁଅ ଯେ ଡଗଡଗ ହୋଇ ଚାଲିଯିବ । ସୁମା ତା ସାଙ୍ଗରେ ବାଟ ଚାଲିଲେ କେତେଦିନ ଉଚ୍ଛୁର ନ ହେବ ?

ଶେଷକୁ ଗୁରୁଅ ଏକା ଯିବାର ଠିକ୍ ହେଲା । ଦୁଇ ତିନିଦିନ ଭିତରେ, ଯେତେ ଚଞ୍ଚଳ ସେ ପାରେ ଯିବ ଆଉ ଆସିବ । ସେ

କେତେଟା ଦିନ ସୁମା କଣ ଘରେ ଏକୁଟିଆ ରହିଯିବ ନାହିଁ ? ଦାସଙ୍କ ଘରୁ ମନ୍ଦାଏ ପେଜ କି ଜାଉ ଅଣି ରାଜକୁମାରକୁ ଟିକଏ ଟିକଏ ଦେଉଥିବ ।

ସକାଳୁ ଉଠି ଗୁରିଆ ସହରକୁ ଯିବ ବୋଲି ବାହାରିଲା । ପାଞ୍ଚ ଦିନ ଉପାସ, ମୁଣ୍ଡ ବୁଲଉଛି, ଗୋଡ଼ ଉଠୁ ନାହିଁ । ସୁମା ତର ତର ହୋଇ ପାଖ ବଣରୁ କରୁଛି ଅନାବନା ଶାଗ ଛୁଣ୍ଡାଇ ଅଣିଲା । ଟିକଏ ଲୁଣ ପକାଇ ତାକୁ ସିଝାଇଦେଲା । ନିଜ ପାଇଁ ଅଧେ ରଖିଛି ବୋଲି ମିଛରେ କହି ଗୁରିଆକୁ ସବୁ ଖାଇବାକୁ ଦେଲା । ଦୁଇ ଦିନର ବାଟ ସେ ନ ଖାଇଲେ ଚାଲିବ କିପରି ? ସୁମା ତ ଘରେ ଚୁପ୍ ହୋଇ ଶୋଇପଡ଼ିବ ।

ଗୁରିଆ ଡେଲିଟା ଗାମୁଛଖଣ୍ଡ ଅଣ୍ଟାରେ ଗୁଡ଼ାଇ ଘରୁ ବାହାରିପଡ଼ିଲା । ସେ ଅଖି ଅଗରୁ ନ ଲୁଚିବା ଯାଏ ସୁମା ତାକୁ ଚାହିଁ ରହିଥାଏ—ରାଜକୁମାର ତା କାଖରେ । ଗୁରିଆ ଏତେ ବ୍ୟସ୍ତ ହୋଇ ଚଢ଼ିଥାଏ ଯେ, ସେ ଥରେ ମୁହଁ ବୁଲାଇ ସୁମାକୁ ଚାହିଁଲା ନାହିଁ କି ରାଜକୁମାରକୁ କାଖକୁ ନେଲା ନାହିଁ । ତା ଅଖିରେ ଯେ ଲୁହ ଚଳଚଳ, କେବଳ ସେତକ ଲୁଚାଇବା ପାଇଁ ସେ ମୁହଁ ନ ବୁଲାଇ ସିଧା ହନହନ ଚାଲିବାରେ ଲାଗିଗଲା ।

କେତେ ସମୟ ସୁମା ସେମିତି ଠିଆ ହୋଇଛି, ତାର ହୋସ ନାହିଁ । ରାଜକୁମାର ଯେତେବେଳେ କାନ୍ଦି ଉଠିଲା, ସେତେବେଳକୁ ସୂର୍ଯ୍ୟଦେବତା ଅସି ମୁଣ୍ଡ ଉପରେ । ଭୋକରେ ପିଲାଟା ଅଉଠୁ ପାଉଠୁ ହୋଇଯାଉଛି । କାନ୍ଦ ବି ତା ପାଟିରୁ ବାହାରୁ ନାହିଁ । ସେ ସେଥିପାଇଁ ପୁଅକୁ କାଖରେ ଧରି ଦାସଙ୍କ ଘରଆଡ଼େ ଚାଲିଲା ।

— ୩ —

ମଣ୍ଡଳୀଙ୍କ ପିର୍କାର ଗୋଟିଏ ଅଜଣା ଅଶୁଣା ପଲ୍ଲୀ; ସବୁ ଜାକ ମିଶି କୋଡ଼ିଏ ପଚିଶ ଘରରୁ ବେଶୀ ନୋହାନ୍ତି। ଆଜକାଲିକା ଶିକ୍ଷା ସଭ୍ୟତାର ଗନ୍ଧ ସୁଦ୍ଧା ସେଠାକୁ ଯାଇ ନାହିଁ। ବାଟଘାଟ ମଧ୍ୟ ସେ ଗାଁକୁ କିଛି ନାହିଁ; ତେଣୁ ବାହାର ଜଗତ ସହିତ ତାର ବେଶୀ କିଛି ସମ୍ପର୍କ ନାହିଁ କହିଲେ ଚଳେ। ଗାଁ ଲୋକେ କେତେ ପୁରୁଷ ହେଲଣି ସୁଖେ ଦୁଃଖେ ଚଳି ଆସୁଥିଲେ; କୌଣସି ପ୍ରକାରେ ଅଭାବ ଅସୁବିଧା କଣ, ସେମାନେ ଏପର୍ଯ୍ୟନ୍ତ ଅନୁଭବ କରି ନ ଥିଲେ।

ଗାଁରେ ଦୁଇ ତିନୋଟି ଘର ଟିକିଏ ବଡ଼ଲୋକ, ବର୍ଷକ ମୁଠାଏ ଖାଇବାକୁ ପାଆନ୍ତି। ବାକୀ ଯାହା ଦୁଇ ଗୁଣ ଶଗଡ଼ ଧାନ ବଳେ ଅନ୍ୟକୁ ବିକନ୍ତି, ମୂଲ ଦିଅନ୍ତି, କରଜ ଲଗାନ୍ତି। ମାତ୍ର ଏ ବର୍ଷ ସହରରୁ ମହାଜନ ଯାଇ ତାଙ୍କଠାରୁ ସବୁ ଧାନ ନେଇ ଆସିଛି। ଟଙ୍କା ଲୋଭରେ ନିଜର ଗରଜଟକ ମଧ୍ୟ ନ ରଖି ଜଣେ ଦୁଇଜଣ ଧାନ ସବୁ ଦେଇ ଦେଇଛନ୍ତି। ନୂଆ ଫସଲ ଅମଦାନୀ ହେବାକୁ ଆଉ ଖୁବ୍ ଯୋର ମାସେ, ଦେଢ଼ମାସ; ଏ କେତୋଟି ଦିନ କଣ ଯେ କୌଣସି ପ୍ରକାରେ କଟିଯିବ ନାହିଁକି ?

ମାତ୍ର ଦିନ ତ କଟିଲା ନାହିଁ; କୁଆଡ଼ୁ ଅକାଳ ଝଡ଼ତୋଫାନ ଆସି ସବୁ ଫସଲ ନଷ୍ଟ କରିଦେଇ ଗଲା। ଘରଦ୍ୱାର ଭାଙ୍ଗି ଚୂନା କରିଦେଲା। ସମସ୍ତଙ୍କ ମୁଣ୍ଡରେ ଯେପରି ବଜ୍ର ଛିଡ଼ିପଡ଼ିଲା।

ଏହା ଭିତରେ ଦେଢ଼ମାସ ବିତିଗଲଣି। ଲୋକେ ଗଣ୍ଡାଏ ଧାନ ବା ମାଣ୍ଡିଆ ପାଇ ଆଖପାଖ ଗାଁମାନ ସତରଅର ବୁଲି ଆସିଲେଣି। ଘରର ବାସନକୁସନ, ଗାଈଗୋରୁ ଶେଷକୁ ଜମିବାଡ଼ି, ଘରଡିହ ବିକି ମଧ୍ୟ କାମ ପୂରି ପଡ଼ୁ ନାହିଁ। କେତେକ ହାତରେ ଟଙ୍କା ଧରି ଦ୍ୱାରଦ୍ୱାର ବୁଲୁଛନ୍ତି, ତଥାପି ପେଟପାଇଁ ମୁଠାଏ ମିଳୁ ନାହିଁ। ଆଉ କେତେଦିନ ବା ଏପରି ଚଳନ୍ତା ?

ଜଣ ଜଣ ହୋଇ ସମସ୍ତେ ଗାଁ ଛାଡ଼ିଲେ । କିଏ ବ୍ରହ୍ମପୁର, କିଏ ଛତ୍ରପୁର, କିଏ ରମ୍ଭା, କିଏ ମଣ୍ଡୀଡ଼ି—ଯାହା ଆଖି ଯୁଆଡ଼େ ଗଲା ସେ ତେଣେ ଚାଲିଲା । ସ୍ୱାମୀ ସ୍ତ୍ରୀକୁ ଛାଡ଼ିଲା, ପୁଅ ବାପକୁ ଛାଡ଼ିଲା, ମା ଝିଅକୁ ଛାଡ଼ିଲା; ନିଜ ନିଜ ପେଟପାଇଁ କିଏ ଯେ କୁଆଡ଼େ ଛନ୍ନଛଡ଼ା ହୋଇଗଲେ ତାର ଠିକ୍ ରହିଲା ନାହିଁ ।

ଗାଁରେ ରହିଗଲେ କେବଳ ପାଞ୍ଚ ଛ ଘର, ଦୁଇ ତିନୋଟି ପରିବାର ଅନ୍ତତଃ ଦିନକୁ ମୁଠାଏ ଖାଇପାରିବେ ବୋଲି ଧୈର୍ଯ୍ୟ ଧରି ରହିଲେ ; ବାକୀ ନିଃସ୍ୱ ଭାବରେ ରହିଲା ଗୁରିଆ ।

ଗୁରିଆ ନିଜର ସବୁ ଦରବ ବିକିଲା, ଜମିଖଣ୍ଡି ଛାଡ଼ିଲା, ଘର ଡିହ ବନ୍ଧା ପକାଇଲା, ତଥାପି ତାର ଗୁଜୁରାଣ ମେଣ୍ଟିଲା ନାହିଁ । ସୁମାକୁ ଛାଡ଼ି କୁଆଡ଼େ ବି ଯାଇପାରିଲା ନାହିଁ । ଆଉ ସୁମା ? ସୁମା ତ ତାକୁ ମୁହୂର୍ତ୍ତେ ହେଲେ ଆଖି ଆଢୁଆଳ କଲା ନାହିଁ, ସମସ୍ତେ ପିଲା ମାଇପ ଛାଡ଼ି ପଳାଉଛନ୍ତି, ଯଦି ଗୁରିଆ ପଳାଏ—ସେ କରିବ କଣ ? ଭୋକ ଉପାସଟା ସେ ସମ୍ଭାଳି ନେବ; ମାତ୍ର ଗୁରିଆକୁ ନ ଦେଖିଲେ ସେ ରହିପାରିବ ନାହିଁ ।

ହା ବିଧାତା, ଶେଷକୁ ସେକଥା ହେଲା, ସୁମା ଗୁରିଆକୁ ଛାଡ଼ିଲା । ସେ କଣ ସତେ ଆଉ ଫେରିବ ? ଏ ଗାଁରୁ ଯେ ଯାଇଛି, ସେ ତ ଆଉ ଫେରି ନାହିଁ । ସେ ତାକୁ କାହିଁକି ବା ଛାଡ଼ିଲା ? କେଡ଼େ ଭଲ ମଣିଷଟିଏ ସେ, ତାକୁ କେତେ ସୁଖ ପାଉ ନ ଥିଲା !

ସୁମାର ଗୋଟି ଗୋଟି ହୋଇ ଅତୀତ କଥା ମନରେ ଖେଳିଗଲା । ଯେଉଁ ଦିନ ସେ ନୂଆ ହୋଇ ଏ ଘରକୁ ଆସିଥିଲା, ସେ ଦିନ ତାର ନିଜର ହୋଇ ଆଉ ଏ ଘରେ କେହି ନ ଥିଲେ । ଦୁଇ ଚାରି ଦିନ ତାକୁ ବଡ଼ ଅଡ଼ୁଆ ଲାଗିଲା । ଯେଉଁ ଜଣେ ଦୁଇଜଣ ବନ୍ଧୁବାନ୍ଧବ ଥିଲେ, ସେମାନେ ଫେରିଗଲେ; ସେତେବେଳେ ଗୁରିଆର

କ ପୂର୍ବ, ସୁମାକୁ ଛାଡ଼ି ସେ ଦାଣ୍ଡକୁ ଯିବାକୁ ବି ନାରାଜ । ପନ୍ଦର ଦିନ ଯାଏ ତ କାମଦାମ ସବୁ ବନ୍ଦ । କେଡେ କଥା—ଯେ ପାଟିରେ କଣ ବାଟୁଳି ବାଜୁଥାଏ ?

କ୍ରମେ ମାସ ମାସ ଯାଇ ବର୍ଷ ପୂରିଲା, ସୁମାର ଲାଜସରମ ଟିକିଏ କମିଗଲା । ଦୁହେଁଯାକ ବିଲକୁ ଗଲେ, ସାଙ୍ଗ ହୋଇ କାମ ଦାମ କଲେ । ସାଇପଡ଼ିଶାଙ୍କ ମଧ୍ୟରେ ସୁମା ମିଳାମିଶା କଲା । ସେତେବେଳେ ସବୁ ମାଇପେ ଗୁରୁଅର ଖାଲି ପ୍ରଶଂସା କରୁଥାନ୍ତି । ଗୁରୁଅ କଥା ପଡ଼ିଲେ ତା ଛାତି କୁଣ୍ଢେମୋଟ ହୋଇଯାଏ । ଗୁରୁଅ କପର ବିଲରୁ ଶୀଘ୍ର ଆସିବ, ସେ ତା ଆଗରେ ସବୁ କଥା କହିବ—ଥରକୁଥର ସେ ସେଇକଥା କେବଳ ମନରେ ବିଚାର କରୁଥାଏ ।

କୌଣସି ଦିନର କଥା ତ ତା ମନରୁ ପାଶୋର ଯାଇ ନାହିଁ । ଏଇ ସେ ଦିନ ବା କଣ ନ ହେଲା ? ଟିକିକ କଥାରେ ସୁମା ଗୁରୁଅ ରୁଷାରୁଷି ହୋଇଥାନ୍ତି, ପାହାନ୍ତାରୁ କେହି କାହାକୁ କଥା କହୁ ନ ଥାଏ । ଗୁରୁଅର ବିଲକୁ ଯିବାକୁ ଜମା ମନ ନ ଥାଏ । ତଥାପି ନ ଗଲେ ନ ଚଳେ; ବେଉପଣ ଦିନ ଗଡ଼ି ଯାଉଛି । ସେ ଲଙ୍ଗଳଟାକୁ ମୁଣ୍ଡରେ ଦେଇ ହଳ ଧରି ବାହାରି ପଡ଼ିଲା । ବର୍ଷା ଦିନ, ଘଣ୍ଟାକ ମଧ୍ୟରେ ଗୁରୁଅଡ଼ୁ ମେଘ ଘୋଟି ଅନ୍ଧାର କରି ଆସିଲା; ଝିପି ଝିପି ଅସ୍ରାଏ ମଧ୍ୟ ବର୍ଷି ଦେଇଗଲା । ସୁମା ମନ ସେତେବେଳକୁ ଖାଲି ଗୋଳେଇ ଘାଣ୍ଟି ହେଉଥାଏ । ସେ ସବୁ କାମଦାମ ଛାଡ଼ି ଆସି ଦୁଆର ମୁହଁରେ ଠିଆ ହୋଇଥାଏ । ମନେ ହେଉଥାଏ, ଆଜି ସେ ବିଲକୁ ଗଲେ କାହିଁକି ? ଆଜି ବେଉପଣି ନ ହୋଇଥିଲେ କଣ ବା ବିଗିଡ଼ି ଯାଉଥିଲା ? ସବୁ ଦୋଷ ମୋର ସିନା ! ମୁଁ ବା କାହିଁକି ରୁଷିଲି ? ଏତିକି ସମୟରେ ସେ ଚମକି ପଡ଼ି ଦେଖିଲା, ଗୁରୁଅ ଆଗରେ ଠିଆ; ଆଖି ଦୁଇଟା ତାର କଉତୁକରେ ଜଳୁଛି । ସୁମା ତ ପ୍ରଥମେ ବିଶ୍ୱାସ କରି

ପାରିଲା ନାହିଁ । ଗୁରୁଅ ଯେତେବେଳେ ପ୍ରଥମେ କଥା କହି ତାଙ୍କୁ ଏକାବେଳକେ କୁଣ୍ଢାଇ ଘରକୁ ନେଇଗଲା, ସେତେବେଳେ ତ ସେ ମାନ ଅପମାନ ସବୁ କୁଆଡ଼େ ଭୁଲିଗଲା । ତା ମନେ ଅଛି, ଗୁରୁଅ ସେତେବେଳେ କହିଥିଲା—ଛି, ଏ ଧନେ କଏ କଣ ଲୁଷନ୍ତି ?

ସୁମା ଆଖିରୁ ଧାର ଧାର ଲୁହ ବହିଗଲା । ସେଇ ଗୁରୁଅ, ଆଜି ପୁଣି ପେଟ ଜ୍ୱାଳାରେ ସେ ତାଙ୍କୁ ପାଖରୁ ଛାଡ଼ିଦେଲା । ହେ ମା ତାରିଣୀ ତାଙ୍କର ଭଲ ହେଉ, ସେ ବଞ୍ଚିଲ ଫେରି ଆସନ୍ତୁ ।

—୪—

ସୁମା ଯାଇ ଦାସଘରେ ବାହୁଡ଼ିପଡ଼େ ଲୁଚି ଚିଆ ହେଲା । ତା ଇଚ୍ଛା, କେବଳ ବୋହୂ ସାଆନ୍ତାଣୀ ଆସନ୍ତେ କି ? ତାଙ୍କଠାରୁ ପୁଅ ପାଇଁ ମନ୍ଦାଏ ପେଜ କି ଟିକିଏ ଜାଉ ମାଗି ନିଅନ୍ତା । ତା ଭୋକ ତ ମରିଗଲାଣି, ଖାଲି ପିଲାଟା ଯାହା କାଜଳୁବାଉଳୁ ହେଉଛି । ବୁଢ଼ୀ ତ ଦେଖିଲେ ଏକାଳବେଳେ ଚୁଡ଼ାଏ କଣ କହିବେ, କେତେ ଗାଳିମନ୍ଦ କରିବେ ।

ସୁମା କେବେ କାହାର ଦୁଆରକୁ ମାଗିବାକୁ ଯାଇ ନାହିଁ । କିପରି ମାଗିବାକୁ ହୁଏ ସେ ତାହା ଜାଣି ନାହିଁ । କଣ କହିବ, କିପରି ହାତ ପତେଇବ, ସେଇ କଥା ମନେ ମନେ ଭାବୁଛି । ଦାସଘର ତାର ଅଚିହ୍ନା ନୁହେ, ନିମନ୍ତ୍ରଣ ପର୍ବରେ ସେ ଯାଇ କେତେଥର ତାଙ୍କ ମାଇଟି ପନ୍ଦି କରି ଦେଇ ଆସିଛି । ଗୁରୁଅ ବି ତାଙ୍କ ଘରେ ବନ୍ଧୁ ସମୟରେ ମୂଲ ଲାଗେ, ସେ ଯାଇ ମଜୁରି ବାବଦ ଧାନ ନେଇଆସେ ।

ସେ ଆଗରୁ ଶୁଣିଛି, ଦାସଙ୍କ ଘରେ ଧାନଗୁଞ୍ଜଲ ଅଛି, ନିତପ୍ରତି ତାଙ୍କ ଘରେ ଭାତ ଜାଉ ହୁଏ । ବୋହୂଟିର ମନ ଭାରି ନରମ । ଲୋକେ ଇ କୁହନ୍ତି ଯେ ଯାହା ମାଗେ ସେ ତା ପାଉପର୍ଯ୍ୟନ୍ତ

ଦଏ । ଦିନେ ଦିନେ ନିଜେ ନ ଖାଇ ମଧ୍ୟ ନିଜ ଭ୍ରାତଜାଇ କାହାକୁ କେମିତି ଦେଉଛି ବୋଲି ଲୋକେ କହନ୍ତି । କିନ୍ତୁ ଶାଶୁବୁଢ଼ୀ—ସେ ତ ଯକ୍ଷ । ବୋହୂ କଥା ଯାଇ ମେଣିପଙ୍କ ଆଗରେ କହିଦିଏ, ଯେ ମାଗିବାକୁ ଯାଇଥାନ୍ତି, ତାଙ୍କୁ ନାନାକଥା କହି ଗାଳିଦିଏ ।

ସୁମା ତ ଆଉ କିଛି ମାଗିବାକୁ ଯାଇ ନାହିଁ । ସେ ମାଗିବ ମୁଦାଏ ପେଜ—ଯାହା କି ତାଙ୍କ ଗୋରୁକୁଣ୍ଡରେ ପଡେ, ଆଉ ମାଗିବ ମୁଠାଏ ଅଇଣ୍ଠା ଭାତ—ଯାହାକୁ ସେମାନେ ପୋଖରୀ ତୁଠରେ ଅକାଉ ଦେଇ ଆସନ୍ତି ବା କୁକୁର ଆଗରେ କୁଢ଼ାଇ ଦିଅନ୍ତି । ସେଥିରେ କଣ ତାଙ୍କର କିଛି ଧନ ଦଉଲତ ସରିଯିବ ?

କିନ୍ତୁ ସୁମାର କରମ ଅବଳ । ବାରଅଡକୁ ବୋହୂ ନ ଆସି ଆସିଲା ଶାଶୁ ବୁଢ଼ୀ । ସେ ସୁମାକୁ ଚୁପ୍ ହୋଇ ଠିଆ ହୋଇଥିବାର ଦେଖି ନିଆଁ ହୋଇଗଲା । ସୁମା ଭୟରେ ଜଡ଼ସଡ଼ ହୋଇଯାଇ ଟିକିଏ ପାଖକୁ ଲାଗି ଆସିଲା, ଇଚ୍ଛା କିଛି କହିବ । "ଚୋରଣୀ, ମୋ ଘରୁ ଚୋରି କରିବାକୁ ଆସିଛୁ ? ଏଇଲାଗେ କହିଦେବି ଯେ, ଗଛରେ ବାନ୍ଧି ବୁହେ ଛେଚିବେ"—ଏ କଥା ଶୁଣିବାକୁ ତାର ଯେପରି କାନ ବନ୍ଦ । ସେ ଥରି ଥରି ହାତ ପତାଇ ମୁଠାଏ ଖାଇବାକୁ ମାଗିଲା । ବୁଢ଼ୀ ଗୋଡ଼ତଳେ ପଡ଼ିଯିବାକୁ ଯାଉଥିଲା, ଶୁଣିଲା—"ରାଣ୍ଡୀ, ପେଟ ପୋଡ଼ିଯାଉଛି ? ପୁଅକୁ ରାନ୍ଧି ଖାଉ ନାହୁଁ ?"

ଏଇ କଥା ପଦକରେ ତାର ସର୍ବାଙ୍ଗ ଜଳିଉଠିଲା । ସେ ପଦେ ହେଲେ କିଛି ନ କହି ସେଠାରୁ ବୁଲିପଡ଼ିଲା, ଫେରିଲାବେଳେ କେବଳ ଏପରି ଗୋଟାଏ ଚାହାଣୀ ଚାହିଁଥିଲା, ଯାହା କି ବୁଢ଼ୀ ବୋଧହୁଏ ଜୀବନରେ କେବେ ଭୁଲିପାରିବ ନାହିଁ ।

—※—

ସେ ଦିନଟା ପୁଅପାଇଁ କିଛି ମିଳିଲା ନାହିଁ । ଦିନ ଯାଇ ରାତି ହେଲା । ସୁମା ପୁଅକୁ କୋଳରେ ଯାକି ଚୁପ୍ ହୋଇ ଘରେ ଶୋଇ-

ରହୁଲା । ଛୁଆଟା ଦିନଯାକ କାନ୍ଦି କାନ୍ଦି ଶୋଇ ପଡୁଛି । ଅତି ବ୍ୟସ୍ତ ହେଲେ ହେଁ ସେ ତାକୁ ଭଣ୍ଡିବାକୁ ମିଛରେ ତା ଓଠ ପାଖରେ ଧରି ଦୁଧ ଦିଏ । ଶୁଖିଲା ତନଡ଼ାରେ ଦୁଧ ବା ଆସିବ କୁଆଡ଼ୁ ? ବେଳେ ବେଳେ ପାଣି ଟୋପାଏ ଆଣି ସୁମା ତାକୁ ପିଆଇ ଦିଏ ।

କ୍ରମେ ରାତି ଅଧ ହୋଇ ଆସିଲା, ସୁମା ଆଖିରେ ଟିକିଏ ହେଲେ ନିଦ ନାହିଁ । କାଲି ଏଇଠି ଗୁରୁଆ ଶୋଇଥିଲା । କାଲି ଏମିତି ଉପାସ ଥିଲେ ମଧ୍ୟ ତାକୁ ତ ବେଶ୍ ନିଦ ହୋଇଯାଇଥିଲା । ଆଜି ମୋଟେ ଆଖି କଷା ପଡ଼ୁ ନାହୁଁ । ଗୁରୁଆ ତିନି ଗୁରୁଦିନ କହୁଯାଇଛି, ଗୋଟାଏ ଦିନ ତ କଣ କଟୁ ନାହିଁ—ତିନି ଗୁରୁଦିନ ସେ ଚଳିବ କିପରି ?

ଏତିକିବେଳେ ବାଡ଼ିଆଡ଼ ଖୁଣ୍ଟା ଗଛରେ ବସି ଗୋଟାଏ ପେଚା ବୋବାଇ ଉଠିଲା । ସୁମାକୁ ଭାରି ଡର ମାଡ଼ିଲା, ସେ ସେଇ ବିଛଣାରେ ପଡ଼ି ପେଚାକୁ ଯେତେ ଗାଳି ଦେଲା, ଯେତେ ଲଣ୍ଡା ଗ୍ରେରଣୀ, ଦେଢ଼ଶୁର ଅଇଣ୍ଠାଖାଇ ବୋଲି କହିଲା, ତଥାପି ସେ ପେଚା ବନ୍ଦ ହେଲା ନାହିଁ । ସୁମା ଆଉ ଉପାୟ ନ ଦେଖି ପୁଅକୁ ଯାକିଯୁକି କୋଳରେ ପୂରାଇ ଦେଲା; ଦୁଇ କାନକୁ ବନ୍ଦ କରି ପଡ଼ି ରହିଲା ।

ପୁଅ ପୁଣି କାନ୍ଦି ଉଠିଲା, ତା କାନ୍ଦ ଆହୁରି କ୍ଷୀଣ, ଯେପରି ତୋଟି ଶୁଖିଗଲାଣି । ସୁମା ଆଉ ସମ୍ଭାଳିପାରିଲା ନାହିଁ । ହଠାତ୍ ବିଛଣାରୁ ଉଠି ପଡ଼ିଲା; ପୁଅକୁ କୋଳରେ ଯାକି ଦାଣ୍ଡ ରାସ୍ତା ଧରିଲା । ଘରଦ୍ୱାର, ଗାଁ ଗଣ୍ଡା, ମାୟା ମମତା ସବୁ ଛାଡ଼ିଲା, ଗୁରୁଆର ଆଶ୍ୱାସନା ବାଣୀ ଭୁଲିଲା । ପୁଅକୁ ବଞ୍ଚାଇବା ପାଇଁ ଆଖି ସିଧା ଚାଲିବାରେ ଲାଗିଲା ।

ବାଟରେ ରାତି ପାହିଲା, ଦିନ ହେଲା, ସୂର୍ଯ୍ୟଦେବତା ମୁଣ୍ଡ

ଉପରକୁ ଉଠିଲେ । ତଥାପି ସୁମାର ବାଟ ସରୁ ନ ଥାଏ । ଦୁ ଖୋଜ ଯାଏ, ଟିକିଏ ବସେ; ପୁଣି ଉଠି ବାଟ ଚାଲେ । ଏପରି ସେ କେତେ ବାଟ ଯିବ ? କୁଆଡ଼କୁ ଯିବ ? କାହା ପାଖକୁ ବା ଯିବ ? ହାୟ ବିଧାତା !

ଗୋଟିଏ ଗଛ ମୂଳରେ ସେ ବସିପଡ଼ିଲା । କ୍ରମେ ତା ମୁଣ୍ଡ ଘୂରି ଆସିଲା, ଚାରିଆଡ଼େ ଅନ୍ଧାର ଦେଖାଗଲା । ସେ ଆଉ ସମ୍ଭାଳି ନ ପାରି ଭୂଇଁ ଉପରେ ପଡ଼ିଗଲା ।

ବହୁତ ପାଣି ଛାଟାଛାଟି ପରେ ସୁମାର ଚେତନା ଆସିଲା । ସେ ଆଖି ମିଟାଇ ଦେଖିଲା, ତା ଆଗରେ ଦୁଇଜଣ ବାବୁ ଠିଆ ହୋଇଛନ୍ତି । ସେ କେବେ ଶୁଣିଥିଲା ପିଲାଧରା କଥା । ଏମାନେ ସେଇ ପିଲାଧରା ନୁହନ୍ତି ତ ? ସେ ଆଗ ରାଜକୁମାରକୁ ଦବାଣ୍ଡି ତା କୋଳକୁ ଟାଣି ନେଲା । ଲୁଗାପଟା ସଜାଡ଼ି ଯାକିଯୁକି ବସିବାକୁ ଚେଷ୍ଟା କଲା ।

ଜଣେ ବାବୁ କହିଲେ, "ତୁ କେଇଦିନ ହେଲା ଖାଇ ନାହୁଁ ? ଏ ଚୂଡ଼ାଗଣ୍ଡାକ ନେ, ଆଗ ଖା; ତା ପରେ ଆମ ସାଙ୍ଗରେ ଯିବୁ, ଆମେ ଭାତ ଖାଇବାକୁ ଦେବୁ ।"

ଏ କଥାରେ ସୁମା ମନରେ ଟିକିଏ ଦମ୍ଭ ଆସିଲା ସତ, ତଥାପି ତାର ସାହସ କୁଳାଉ ନ ଥାଏ । ବହୁତ କଷ୍ଟରେ ସେ କହିଲା, "କେତେ ବାଟ ବାବୁ ? ମୁଁ ତ ଆଉ ଜମା ଚାଲିପାରିବି ନାହିଁ । ମୋ ପୁଅକୁ ଆଗ ବଞ୍ଚାନ୍ତୁ । କେତେଦିନ ହେଲାଣି ତା ପାଟିରେ ଗଣ୍ଡାଏ କଣ୍ଠ ମୁଁ ଦେଇ ନାହିଁ ।'' ପିଲାଧରା କଥା ସେତେବେଳକୁ ସେ ଭୁଲିଗଲାଣି ।

ବାବୁଙ୍କ ମନ ତରଳିଗଲା । ଜଣେ ସେଠାରେ ବସି ପଡ଼ିଲେ, ତାଙ୍କ ଇଙ୍ଗିତରେ ଆଉ ଜଣେ ଦୁଧ ଆଣିବାପାଇଁ ନିକଟ ଗାଁକୁ ଚାଲିଗଲେ ।

ସୁମା ମନରେ ସାହସ ବାନ୍ଧିଲା । ସେ ବାବୁଙ୍କୁ ନିଜର ଭକ୍ତି ଜଣାଇବା ଆଶାରେ କେତେ କଥା କହିଲା, ଦୁଃଖ କଲା । ପିଲାଟାକୁ ଯେ ସେ ଆଉ ବଞ୍ଚାଇପାରୁ ନାହିଁ, ସେଥିପାଇଁ ବିକଳ ହୋଇ କାନ୍ଦି ପକାଇଲା ।

ବାବୁ ପ୍ରସ୍ତାବ କଲେ, "ତେବେ ପୁଅଟିକୁ ଆମକୁ ଦେଇଦେ । ଆମେ ତାକୁ ଆଶ୍ରମରେ ରଖିବୁ, ଦୁଧ ବାଲି ଖାଇବାକୁ ଦେବୁ । ଏହିପରି ଆଉ କେତେ ପିଲା ସେଠାରେ ଅଛନ୍ତି ।"

ପିଲା ନେବା କଥା ଶୁଣି ସୁମା ପୁଣି ଥରେ ଚମକି ପଡ଼ିଲା— ଆଉ କେତେ ପିଲା ରଖିଛନ୍ତି ? ଏ କଣ ତେବେ ପିଲାଧରା ? ପିଲାଙ୍କୁ ନେଇ କରିବେ କଣ ? ସେ ପୁଣି ଡରରେ ଜଡ଼ସଡ଼ ହୋଇଗଲା, ପୁଅକୁ ଆଉ ଥରେ ଛାତି ଭିତରେ ଜାକି ଧରିଲା ।

ଦୁଧ ଆସି ପହଞ୍ଚିଲା । ସୁମା ପ୍ରଥମେ ଯେତେବେଳେ ଦୁଧ ପିଆଏ, ରାଜକୁମାର ତୋଟିରେ ଲଗିଲା । ସେ ବହୁତ କାଶିଲା, ପରେ ଅସ୍ତେ ଅସ୍ତେ ପିଇଲା— ଟିକିଏ ଚେଙ୍ଗା ହେଲା ।

ବାବୁ କହିଲେ, "ତୁ ଡରୁଛୁ କି ? ପିଲା ତୋର ଯତ୍ନରେ ରହିବ । ତୁ ତ ତାକୁ ସବୁଦିନ ଖାଇବାକୁ ଦେଇପାରୁ ନାହୁଁ, ତାକୁ ବଞ୍ଚାଇ ରଖିବୁ କିପରି ? ଆମେ ନେଲେ ସେ ବଞ୍ଚି ରହିବ—ବଡ଼ ହେବ ।"

ସୁମା ସବୁ କଥା ବୁଝିପାରିଲା ନାହିଁ; 'ବଞ୍ଚି ରହିବ' କଥାଟା ତା ମନକୁ ଓଲଟପାଲଟ କରିଦେଲା । ତାର ମନେ ପଡ଼ିଗଲା, ଦାସଘର ବୁଢ଼ୀ କହିଥିଲା, "ପୁଅକୁ ରାନ୍ଧି ଖାଉ ନାହୁଁ ।' ସେ ହଠାତ୍ ପୁଅକୁ ମୁହଁ ପାଖରେ ଧରି ଟିକିଏ ଗେଲ୍ କଲା । ତାର ଟିକି ଗାଲ ଦୁଇଟିରେ ଦୁଇଗୋଟା ଚୁମା ଦେଲା । ସେଇଠୁ ବାବୁଙ୍କ ଗୋଡ଼ତଳେ ପୁଅକୁ ରଖିଦେଇ ଲେଉଟି ପଡ଼ିଲା । ବାବୁଙ୍କ ଚୂଡ଼ା ସେଇଠି

ପଡ଼ିରହିଲ, ତା ଚୁଣ୍ଡା ଗାମୁଛା କରିଅଖଣ୍ଡିକୁ ମଧ୍ୟ ସେ ଗୁହିଁଲା ନାହିଁ । କଥା ପଦେ ନ କହି ସେ ଚାଲିଲା ସେହି ଗହିରା ବାଲିରେ ତା ଅଙ୍ଗି ସଲଖା ।

ବାବୁ କହିଲେ—ବାଘୁଣୀଟାଏ ନିଷ୍ଚୟ ।

---

# ଜେଲ ସାଥୀ

ଯାହାକୁ ନେଇ ଏ ଗପ, ମନରେ ଦୁଃଖ ହେଉଛି, ସେ ଘୁଣାକ୍ଷରେ ସୁଦ୍ଧା ଜାଣିପାରିବ ନାହିଁ ଯେ ତା ବିଷୟରେ ଏତେ କଥା ଲେଖାଯାଉଛି । ସେ ହୁଏ ତ ବର୍ତ୍ତମାନ ଜେଲ ଭିତରେ ତା ମାଆକୁ ସ୍ମରି ଏକାକୀ ବସି ଲୁହ ଗାଡୁଥିବ । ସେ ଯେପରି ତେଜୀ, ଜେଲ କର୍ତ୍ତୃପକ୍ଷଙ୍କ ଭାଷାରେ ଅବାଧ୍ୟ, ସେ ଯେ ହାତକଡ଼ି ଗୋଡ଼କଡ଼ି ବାନ୍ଧିଅଯାଇ ସେଲ ଭିତରେ ଅବଦ୍ଧ ହୋଇ ନ ଥିବ, କିମ୍ବା ଜମାଦାରଠାରୁ ବାଡ଼ ଡିଅ ଖାଉ ନ ଥିବ, ତା କିଏ କହିପାରେ ? ହୁଏ ତ ତା ଜୀବନଟାଯାକ ସେଇଠି କଟିଯିବ; ପଦାର ଆଲୋକ, ମୁକ୍ତବାୟୁ ଏ ଜନ୍ମରେ ଆଉ ତା ପାଇଁ ଦୁଷ୍ପ୍ରାପ୍ୟ ହୋଇପାରେ । ତାକୁ ସମସ୍ତେ ଭୁଲିପାଇ ପାରନ୍ତି, ଭୁଲିଯିବେ ମଧ୍ୟ; ମାତ୍ର ମୋ ମନରୁ ଯେ ସେ କଦାପି ପାଶୋରି ଯିବ ନାହିଁ । ସେ ମୋର ଜେଲର ଦୁଇଦିନିଆ ସାଥୀ; ଜୀବନ ସାଥୀ ଅପେକ୍ଷା ମଧ୍ୟ ସେ ହୃଦୟ ବେଶି ଦଖଲ କରି ବସି ରହିଛି ।

ଘରେ ଭୋକ ଉପାସରେ ରହି ଅତିଥିଙ୍କୁ ଖାଇବାକୁ ଦେବା ହିନ୍ଦୁଙ୍କ ପକ୍ଷରେ ଧର୍ମ । ଦେଶରେ ଶହ ଶହ ଲୋକ ମୁଠାଏ ଭାତ ଖାଇବାକୁ ନ ପାଇ ଛଟପଟ ହୋଇ ମରୁଥିବା ବେଳେ ଲକ୍ଷ ଲକ୍ଷ

ମହଣ ଧାନ ଗୁଡ଼ିକ ବାହାରକୁ ରପ୍ତାନୀ କରିବା ଅନ୍ୟାୟ—ଏହି କଥା କହି ଅଧର୍ମ କରିଥିବାରୁ ମୋତେ ସରକାରଙ୍କ ଅତିଥିଶାଳାରେ କେତେଦିନ ଅତିଥି ହେବାକୁ ପଡ଼ିଥିଲା । ସେ ଦିନ ଯେତେବେଳେ ମୋତେ ବାହାର ଜଗତରୁ ଟାଣିନେଇ ସେ ମେଘନାଦ ପାଚେରି ଘେରାଭ ଭିତରେ ପୂରାଇ ଦିଆଗଲା, ସେତେବେଳକୁ ସନ୍ଧ୍ୟା ହେବାକୁ ଅଳ୍ପ ବେଶି ଡେରି ନ ଥାଏ । ତା ଭିତରଟା ମୋ ଆଖିକି ହଠାତ୍ କିମ୍ଭୁତ କିମାକାର ଦେଖାଗଲା । ସେ ରାଜ୍ୟଟା ଯେପରି ଗୋଟାଏ କୌଣସି ନିପଟ ଅଜଣା ମୁଲକ—ଗଡ଼ଜାତ ରାଜ୍ୟ । ତା ଭିତରର ଗଛଲତା, ଫୁଲବଣ, କୋଠାବାଡ଼ି ସବୁ ଯେପରି ଅଦ୍ଭୁତ । ସେଠାରେ ଶାସକ ଶାସିତ ସମସ୍ତେ ବାହାର ଲୋକଙ୍କଠାରୁ ଏକାବେଳକେ ଭିନ୍ନ । ଭଦ୍ରତା ନିଜର ମର୍ଯ୍ୟାଦା ହାନି ଭୟରେ ଯେପରି ସେମାନଙ୍କ ନିସୀମା ମାଡ଼ି ନାହିଁ; ଲଜ୍ଜା ତାଙ୍କ ସ୍ପର୍ଶରେ ଆସିବାକୁ ବୋଧହୁଏ ଲଜ୍ଜା ବୋଧ କରୁଛି । ଆଗରୁ ମନରେ ଯେତେ ଦମ୍ଭ ଥିଲେ ସୁଦ୍ଧା, ସେଠାରେ ହଠାତ୍ ମୋ ମୁଣ୍ଡ ଘୂରିଗଲା, ଚାରିଆଡ଼ ଆଖିକି ଅନ୍ଧକାର ଦେଖାଗଲା । ଜଣାଗଲା, ସତେ ଯେପରି ପୃଥିବୀ ସାରା ମୋତେ କେନ୍ଦ୍ର କରି ମୋ ଚାରିପାଖରେ ବୁଲିଯାଉଛି, ମୁଁ ତା ସଙ୍ଗେ ସଙ୍ଗେ ମଧ୍ୟ ଘୂରୁଛି ।

ବୋଧହୁଏ ମୋ ଅପରାଧ ଚୋର ଡକାଏତଙ୍କ ଅପରାଧ ପରି ଗୁରୁତର ଥିଲା । ତେଣୁ ଚୋର ଡକାଏତ ଦଫାରେ ଅଭିଯୁକ୍ତ ଲୋକଙ୍କ ଭିତରେ ମୋତେ ଛାଡ଼ି ଦିଆଗଲା । ସେମାନଙ୍କ ଭିତରୁ ଜଣକଠାରୁ ଛିଣ୍ଡା କମଳ ଗୋଟାଏ, ଥାଳିପଟେ ଓ ଡାଟିଆଟାଏ ଛଡ଼ାଇ ଆଣି ମୋତେ ଦିଆଗଲା । ଦେଢ଼ଶହ ଲୋକଙ୍କ ମଧ୍ୟରେ ମୋତେ ମଧ୍ୟ ଜଣେ ହୋଇ ଗୋଟାଏ ଲମ୍ବା ଗୁହାଳରେ ସନ୍ଧ୍ୟା ପୂର୍ବରୁ ଶୋଇବାକୁ ପଡ଼ିଲା ।

ଉପସ୍ଥିତ ପରିସ୍ଥିତିରେ ନିଜକୁ ଖାପ୍ ଖୁଆଇ ନ ପାରିବାରୁ ମନରେ ନାନାପ୍ରକାର ଭାବନା ଖେଳିବାକୁ ଲାଗିଲା । ସେ ଅବସ୍ଥାରେ ନିଦ ହେବା ଅସମ୍ଭବ, ନିଦ ମଧ୍ୟ ମୋର ସେତେବେଳେ କାମ୍ୟ ନ ଥିଲା । ସେ ଦିନର ସକାଳଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଘଟଣାମାନ ତୁହାକୁ ତୁହା ମନେ ପକାଇ ଆକାଶ ପାତାଳ କେତେ କଣ ଭାବୁ ଭାବୁ ବୋଧହୁଏ ରାତି ଅଧ ହୋଇ ଯାଇଥିଲା ।

"ଏ ପିଲିଆ, ଚୁପ୍ ହୋଇ ଶୋଇପଡ଼, ଚାହିଁଛୁ କାହିଁକି ?" ବାହାରୁ ଓ୍ୱାର୍ଡ଼ରର ରୁକ୍ଷ ଶବ୍ଦ ପରି ଏହି କଥାପଦକ ଶୁଣି ମୋ ଚିନ୍ତା କ୍ଷଣକ ପାଇଁ ଦୂର ହୋଇଗଲା । ଚାରିଆଡ଼କୁ ଚାହିଁ ଦେଖିଲି, ସମସ୍ତେ ଆରାମରେ ଶୋଇଅଛନ୍ତି; ନାନାପ୍ରକାର ମିଳିତ ଘଡ଼ଘଡ଼ ଶବ୍ଦ କାନକୁ ଅଦ୍ଭୁତ ଶୁଣାଯାଉଛି । ତା ଭିତରେ ଦୂରରୁ କଇଁ କଇଁ ହୋଇ କାନ୍ଦିବା ଶବ୍ଦ ସେ ଶବ୍ଦକୁ ଅନେକାଂଶରେ ଟପିଯାଉଛି । ସେତେବେଳେ ମୁଁ ଆଉ ସେ ବିଷୟରେ କିଛି ଭାବି ପାରିଲି ନାହିଁ । ମୋ ନିଜର ଭାବନା ପୁଣି ମୋ ଅନ୍ତର ଅଧିକାର କରି ନେଲା ।

ରାତି ପାହିଲା । ଗୁହାଳ ଘର ଫିଟିବାରୁ ଆମେ ସବୁ ପଦାକୁ ଆସିଲୁ । ସର୍କସରେ ଜୀବଜନ୍ତୁ ଖେଳ ଦେଖାଇଲା ପରି ବସ ଉଠ ହୋଇ 'ସରକାର ସଲାମ' ଦେଲୁ । ତା'ପରେ ନିଜ ନିଜ କାମ କରିବା କଥା । ମୁଁ କଣ କରିବି—ଏହି କଥା ଭାବୁଛି, କୋଡ଼ିଏ ଏକୋଇଶବର୍ଷର ଗୋଟିଏ ଯୁବକ ଆସି ମୋତେ କହିଲା, "ବାବୁ, ଏମିତି ଠିଆ ହୋଇଛ କାହିଁକି ? ଆସ, ମୁଁ ମଗରେ ପାଣି ଦେଉଛି, ପାଇଖାନା ଯାଅ । ତୁମ ଥାଳି ମୋତେ ଦିଅ, ମୁଁ ମାଜି ଦେଉଛି ।" ମୁଁ ସେତେବେଳକୁ ମୋର ନିଜତ୍ୱ ଏକାବେଳକେ ହରାଇ ବସିଥାଏ । ତାର ଦ୍ୱାରା ପରିଚାଳିତ ହୋଇ ନିତ୍ୟକର୍ମ କିପରି ସାରିଲି ତା ଜାଣେ ନାହିଁ ।

ସେ ଫୁଟା ମଗଟି ଅନ୍ୟ ହାତରୁ ଛଡ଼ାଇ ଆଣି ମୋତେ ନେଇ ପାଇଖାନା ଦେଖାଇ ଦେଲା, ମଗରେ ପାଣି ଥୋଇଦେଇ ଆସିଲା । ମୋର ଥାଳି ବାଟିକୁ ମାଟି ପକାଇ ମାଜି ଚକ୍‌ଚକ୍ କରିଦେଲା । ମୋ କମଳଖଣ୍ଡି ଝାଡ଼ି ଭାଙ୍ଗି ରଖିଲା । ଜେଲ ଭିତରେ ଏପରି ସହାନୁଭୂତି, ଏପରି ଅଯାଚିତ ସେବା ପାଇ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏଠାରେ ତା ହେଲେ ମନୁଷ୍ୟହୃଦୟ ଅଛି—ଭାବି ଆଶ୍ୱସ୍ତ ହେଲି ।

ଟିକଏ ନିରୋଳା ସମୟ ଦେଖି ସେ ଲୋକଟି ପୁଣି ମୋ ପାଖକୁ ଆସିଲା । ଅଳ୍ପ ଦୂରରେ ବସି କହିଲା, "ବାବୁ, ତମେ ନୂଆ ଆସିଛ, ସେଥିପାଇଁ ଏମିତି ମନ ମାରିଦେଇ ଚିନ୍ତା କରି ବସି ରହୁଛ । ଦୁଇ ଚାରିଦିନ ଗଲେ ଏ ସବୁ ଦେହସୁହା ହୋଇଯିବ ଯେ ।" ଏ କଥାର ଉତ୍ତର ଦେବାର କିଛି ନ ଥିଲା । ମୁଁ ଅନ୍ୟମନସ୍କ ଭାବରେ କେବଳ ହୁଁ ଟିଏ ମାଇଲି ।

ତା ପରେ ସେ ପଚାରିଲା, "ବାବୁ, ତୁମେ କାହିଁକି ଏଠାକୁ ଆସିଛ ? ତୁମ ମାଆକୁ କଣ କିଏ ବାଡ଼େଇଥିଲା ?"—ସେ ମୋ ମୁହଁକୁ ଚାହିଁ ରହିଲା ।

ମୁଁ ବା ଏ ଅଦ୍ଭୁତ ପ୍ରଶ୍ନର କି ଉତ୍ତର ଦେବି ? କିଛି ସମୟ ପରେ ସେ ବୁଝିପାରିବା ଭଳି କଥାରେ ମୋର ଜେଲ ଆସିବା କାରଣ ଅନିଚ୍ଛାସତ୍ତ୍ୱେ ଜଣାଇଲି । ମୁଁ ଖବରକାଗଜବାଲା ଶୁଣି ସେ ଯେପରି ହାତରେ ଚନ୍ଦ୍ର ପାଇଲା । ମୋ ପାଖକୁ ଲାଗିଆସି ମୋ ଗୋଡ଼ ଦୁଇଟାକୁ ଧରିପକାଇ କାନ୍ଦ କାନ୍ଦ ସ୍ୱରରେ କହିଲା, "ବାବୁ, ତୁମେ ତା ହେଲେ ସବୁ ଖବର ଜାଣ, ସତ କହ ବାବୁ ମୋ ମା କିପରି ଅଛି ? ମୋ ମା, ବଶୁନପୁରର ବଗିଆ ବାଉରି ମା—ତୁମେ ତା କଥା ନିଶ୍ଚୟ ଜାଣିଥିବ ।"

ଏହାର ଜବାବ ଦେବା ମୋ ପକ୍ଷରେ ଅସମ୍ଭବ । ତାର

ଅବେଗଭରା ଅନୁନୟ ବିନୟ, ତାର ଛଳଛଳ ଆଖି ଜବାବ ନ ଦେଇ ସହ୍ୟ କରିହେବ ନାହିଁ । ତାକୁ ଟିକିଏ ଆଶ୍ୱାସନା ଦେବା ବାହାନାରେ ମୁଁ କହିଲି, "ତୋ ନାଁ କଣ ବିଶୁ ? ତୋ ଘର ବିଶୁନପୁର ?" ସେ ତା ମୁଣ୍ଡ ହଲାଇ ଏ ପ୍ରଶ୍ନରେ ସମ୍ମତି ଜଣାଇଲା । ତା ପରେ ତାକୁ ବହୁତ ପ୍ରକାର ବୁଝାଇ କହିଲି, "ତୋ ମା ନିଶ୍ଚୟ ଭଲ ଥିବ । ତୁ ବ୍ୟସ୍ତ ହେଉଛୁ କାହିଁକି ? ତେବେ ତୋ ମାଆର କଣ ହୋଇଥିଲା କି ?"

ମୋର ଏଇ କଥା ପଦକରେ ତା ମୁହଁରେ ଦୁଃଖଶୋକର ଛାୟା ଖେଳିଗଲା । ମୁଁ ତାକୁ ଆଉ ଚାହିଁପାରିଲି ନାହିଁ । ମୁହଁ ଅନ୍ୟଆଡ଼େ ବୁଲାଇ ନେଲାକ୍ଷଣି ବୋହି ପଡୁଥିବା ଲୁହ ଦୁଇଧାର ସେ ତା ଆଖିରୁ ପୋଛି କହିବାକୁ ଲାଗିଲା, "ବାବୁ, ମୁଁ ଏଠାକୁ ଦଣ୍ଡଧନ ହୋଇ ଆସିଲିଣି । ଏ ଯେଣେନ୍ତ ମୋ କଥା ଶୁଣିବାକୁ କେହି ରାଜି ହୋଇ ନାହାନ୍ତି । ତୁମେ ଶୁଣିବ, ଶୁଣ । ତୁମେ ବାବୁ, ତୁମେ ପାଠୁଆ, ତୁମେ ମଣିଷ ଚେଙ୍କୁଛ ; ତୁମେ ଯଦି ଆମ ପରି ମୂର୍ଖ ବାଉରୀଙ୍କ କଥା ନ ଶୁଣିବ, ତେବେ ଶୁଣିବେ କଣ ଏଇ ଗ୍ରେଟର ଖଣ୍ଟଗୁଡ଼ାକ ?"

ମଣିଷ ଚରା ପାଠୁଆ ବାବୁଙ୍କୁ କାଲି ସନ୍ଧ୍ୟାବେଳେ ମୁଁ ଏଠାରେ ଦେଖିଥିଲି । ଏ ମୂର୍ଖ ବାଉରୀ ବିଶିଆ ମଧ୍ୟ ଦେଖିଥିବ । ତା ସତ୍ତ୍ୱେ ତାର ମୋ ପ୍ରତି ଯେ ଏ ଧାରଣା କାହିଁକି ଓ କିପରି ହେଲା, ତା ମୁଁ ଭାବିପାରିଲି ନାହିଁ । ବିଶିଆ ତା କଥା ଆରମ୍ଭ କରିଦେଲା, "ମୋଟିତ ଯେତେବେଳେ ପୁଲିସବାଲା ଯୋର କରି ବାନ୍ଧି ନେଇ ଆସିଲେ, ମୋ ମା ବିଛଣାରେ ପଡ଼ିଥିଲା । ତାର ଉଠିବାର ବଳ ଆଉ ନ ଥିଲା । ସେ କାନ୍ଦକାଟି ସେଠି ଗଡ଼ିଗଲା; ମୁଁ ବହୁତ ନେହୁରମନ୍ଦ ହେଲି, ଗୋଡ଼ତଳେ ମୁଣ୍ଡ ବାଡ଼େଇଲି, ତଥାପି ପୁଲିସବାଲାଙ୍କ ମନରେ ଦୟା ବସିଲା ନାହିଁ ।

"ଅଚ୍ଛା ବାବୁ, ଅଜ ଦୁଇଶ୍ହବଦନ ପରେ, ମୋ ମା ଦେହ ଭଲ ହୋଇ ଯାଇଥିଲେ, ପୁଲିସବାଲା ମୋତେ କଣ ଅଣିପାର ନ ଥାନ୍ତେ ? ସେ ଦିନ ଏମିତ ଟାଣି ଅଣିଲେ କାହିଁକି ?"

ମୁଁ କିଛି ନ କହି ଚୁପ୍ ହୋଇ ବସିଥାଏ । ତଥାପି ବଶି ମୋଠାରୁ କିଛି ଉତ୍ତର ପାଇବ ବୋଲି ମୋ ମୁହଁକୁ ଚାହିଁ ରହିଲା । ମୁଁ ତା ପ୍ରଶ୍ନର ଉତ୍ତର ବା କଣ ଦେବି ? ନିଜର ଅସହାୟତା ଘୋଡ଼ାଇବା ପାଇଁ ତାକୁ ଓଲଟି ପଚାରିଲି, "ଅଚ୍ଛା, ପୁଲିସ ତୋତେ ଏଠାକୁ ଅଣିଲେ କାହିଁକି ?"

ବଶି କହିଲା, "ବାବୁ, ସେ ବଡ଼ ଗହନ କଥା । ମୋ ମା କୁଆଡ଼େ ଡାଆଣୀ ? ମୋ ମା ପିଲାଙ୍କୁ କଞ୍ଚା ମୋଡ଼ି ଖାଇଯାଏ ? ଯା ତ ମୁଁ ସହିପାରିବି ନାହିଁ ।"

ତା ପରେ ସେ କିଛି ସମୟ ମଉନରେ କଟାଇଲା । ବୋଧହୁଏ ହୃଦୟରୁ ଉଠୁଥିବା କୋହକୁ ସମ୍ଭାଳି ନେଇ ଆଉ କିଛି କହିବାକୁ ସାହସ ବାନ୍ଧୁଥିଲା । ମୁହୂର୍ତ୍ତିକ ପରେ ପୁଣି ଆରମ୍ଭ କଲା—

"ବଶୁନପୁରର ଗାଁ ମୁଣ୍ଡରେ ଅମ ଘର, ଚୌଧୁରୀବାବୁଙ୍କ ଉହ ସେ । ସେଠାରେ ବଗିଚା କରି ପନିପରିବା ଉତାରିବା ପାଇଁ ଚୌଧୁରୀବାବୁ ମୋ ବାପାକୁ ଅଣି ସେଠି ରଖିଥିଲେ । ଅମେ ମୂଳ ଲାଗି ପେଟପୋଷୁ, ତାଙ୍କ ଉହରେ ଥାଉ ବୋଲି, ବଗିଚାରେ କାମ ଦାମ କରି ପନିପରିବା ଉଠାଉ । କେତେ କଦଳୀ, ଅଳୁ, କଖାରୁ, ଲାଉ ଯେ ବର୍ଷକୁ ବର୍ଷ ସେ ବଗିଚାରୁ ଅଦାୟ କରନ୍ତି, ତାର ଠିକ୍ ନାହିଁ । ତାଙ୍କ ଗୁଳଚର ଅସି ପ୍ରତି ହାଟ ପାଳିରେ ଜିନିଷ ଉଙ୍କ ନେଇ ଯାଏ । ସେ ସବୁ ପରିବା ଯାଇ ହାଟରେ ବିକା ହୁଏ । ଅମେ ମୁଣ୍ଡ ଝାଳ ତୁଣ୍ଡରେ ମାରି ଖରାବର୍ଷା ସହି ସହି ଫସଲ କରୁ ; କିନ୍ତୁ

ସେଥିରୁ ଗୋଟାଏ ଜହ୍ନି ବଷେ ବି ଅମ ପାଟିକୁ ଯିବାର ଯୁ ନାହିଁ । ଏମିତ କଡ଼ା ହୁକୁମ ।

"ବାପା ଥିବାତକ ମୋତେ କିଛି ଜଣା ନ ଥିଲା । ସେ ମୂଲ ଲଗି ଯାହା ପାଉଥିଲେ, ମା ଧାନ କୁଟି ଯେଉଁ ଗୁଣ୍ଡଲ ସେରକ ଅଣୁଥିଲା, ସେଥିରେ ଅମେ ଚଳି ଯାଉଥିଲୁ । ମୁଁ ଗାଁ ଗୋଠିଆ ଗୋରୁ ଜଗି ମାସକୁ ମାସ ଅଠଅଣା ପଇସା ଆଣି ତାଙ୍କୁ ଦେଉଥିଲି । ତନିବର୍ଷ ତଳେ ବାପା ମରିଗଲେ; ଅମକୁ ଦୁଇବେଳା ପେଟ ପୂରାଇ ଖାଇବାକୁ ମିଳିଲା ନାହିଁ । ତେଣେ ଅମ ଜମିଦାରଙ୍କ ତାଗଦା ବଢ଼ିବାରେହିଁ ଲଗିଲା । ମୁଁ ଦିନଯାକ ତାଙ୍କ ବଗିଚ୍ଛରେ କାମ କରିବ, ସେ ଅଳ୍ପ କଦଳୀ ନେଇ ହାଟରେ ବିକିବେ । ମୁଁ ଆଉ ମୋ ମାଆ ପେଟରେ ଓଦାକନା ଦେଇ ଘରେ ଶୋଇବୁ ।

ଥରେ ମା ଯାଇ ତାଙ୍କୁ ନେହୁରା ହେଲା । ମୋତେ ତାଙ୍କ ଘରେ ଚାକରି ରଖିବାକୁ କହିଲା, 'ବାବୁ, କୁନା ହେଉକା ତୁମ ପୁଅ, ଏ ବିଶି କଣ ତୁମ ପୁଅ ନୁହେ । ପିଲଟା ପେଟ ପୂରାଇ ମୁଠେ ଖାଇବାକୁ ପାଉ ନାହିଁ । ତାକୁ ଘରେ ରଖ, ସେ ମୁଠାଏ ଖାଇବାକୁ ପାଉ । ମୋ କଥା—ମୁଁ ତ ଧାନ କୁଟି ଚଳାଇ ନେଉଚ୍ଛି । ବିଶି ତୁମଙ୍କୁ ଲଗିଯା ।'

"ଜମିଦାର ବାବୁଙ୍କର ଦୟା ହେଲା । ମୁଁ ପେଟକୁ ଖାଇ ତାଙ୍କ ଘରେ ଚାକର ରହିଲି । ବାବୁ, ମୋ ଭାଗ୍ୟଟା କଣ ଏଡ଼କ ଖରାପ ! ମୁଁ ତ ଯେଉଁ ମଣିଷ, ବାବୁଙ୍କ କୁନା ହେଉକା ତ ସେଇ ମଣିଷ । ସେ ଥଣ୍ଡା ପାଣିରେ ଗୋଡ଼ ଦେବେ ନାହିଁ, ଦିନକୁ ଗୁରବକତ ଲେଖାଏଁ ଖାଇବେ ; ଅଉ ମୁଁ ପାଇବ ଦିନଯାକ ଖାଟି ଖାଟି ଦିନକୁ ଦୁଇମୁଠା—ଦିନ ଦିପହରଠେଇଁ ବାସିପଖାଳ ମୁଠାଏ ପାଇବ ତ, ରାତିଅଧକୁ ଅଇଣ୍ଠା ସଙ୍କୁଡ଼ିରୁ ମେଞ୍ଚାଏ । କାମରେ ଦିନରାତି ଲହୁ-

ଲହାଣି, ସେଥିରେ ପୁଣି ମାଡ଼, ଗାଳି । କାଇଁକି ? ମୋର ଦୋଷଟା କଣ ? ମୁଁ ବାଉରିପିଲା ହେଲେ ବି ମୋର ତ ପେଟ ଅଛି, ଭୋକ ହେଉଛି । ସେ କଥା କହୁଲେ ହେଲା ଗାଳି, 'ଗଣ୍ଡିପୁଅ ଅଲକ୍ଷଣା ଟୋକା ।' ବାବୁ, କଣ କହିବି ? ମୋର ବଅସର କୁନା ମୋ ଆଗରେ କେତେ ମିଠେଇ, ଦୁଧ, କଦଳୀ, ଭୁଜା ଚୂଡ଼ା ଖାଉଥିବ, ମୁଁ ତାକୁ ଚାହିଁ ଆଖିପାଣି ଆଖିରେ ମାରିବି । ଥରେ ସମ୍ଭାଳି ନ ପାରି ହାତ ବଢ଼ାଇ ତାକୁ ଗଣ୍ଡାଏ ମାଗିଦେଇଥିଲି । 'ଡାଆଣୀ' ବୋଲି କହି ସେ ସେଠାରୁ ପଳାଇ ଯାଇ ତା ମା ଆଗରେ କହିଦେଲା । ତା ପରେ ଯାହା ମୋ ଦଶା ହେଲା ମୁଁ କଣ କହିବି ? ତାଳପିଠା ଗୁଡ଼ାଏ ଖାଇ ଥରେ କୁନାର ହେଲା ଅଜୀର୍ଣ୍ଣ ଝାଡ଼ା । ସେଥିରେ ଦୋଷ ହେଲା ମୋର; ମୁଁ ଡାଆଣୀ ତା ପେଟରେ ପଶିବାରୁ ତାର ଏ ଦଶା ।

"ଅଚ୍ଛା ବାବୁ, ମୁଁ ଏଇଲାଗେ ଭାବୁଚି, ଲୋକ ନ ଖାଇଲେ କାମ କରିବ ବା କେମିତି ? ଯେ କିଛି କାମ ନ କରି କୋଉଁକି ପରି ବସିରହୁଛି, ସେ ଖୁବ୍ ଖାଉଛି । ଅଯନ୍ତ୍ରବ କରି ଗିଳୁଛି । ଆଉ ଯେ ଦିନସାରା ଖାଟୁଛି, ତା ପାଇଁ ପତରଛେଦ । ଏ କେଉଁ ଆଡ଼ର ନାୟମ ? ମୁଁ ଖାଇବାକୁ ଚାହୁଥିଲି କେବଳ ବଞ୍ଚିରହିବା ପାଇଁ । ବଞ୍ଚି ରହିଲେ ଜମିଦାରଙ୍କ କାମଦାମ କରିବି, ମାଆକୁ ପୋଷିବି । ଆଉ କୁନା ବଞ୍ଚି ରହୁଛି କାହିଁକି ? କେବଳ ଗୁଡ଼ାଏ ଖାଇବା ପାଇଁ ସିନା ! ତା ହାତରେ ତ କୁଟା ଖଣ୍ଡିକୁ ଦିଖଣ୍ଡ ହୁଏ ନାହିଁ । ଆଚ୍ଛା, କାହାର ବେଶି ଦରକାର, ତୁମେ କହିଲ ଦେଖି ?"

ପୁଣି ବଣ୍ଟନପୁରର ବଗୁ ମୋ ମୁହଁକୁ ଉତ୍ତର ପାଇବା ଆଶାରେ ଚାହିଁ ରହିଲା । ଏ ଜଟିଳ ପ୍ରଶ୍ନର ଉତ୍ତର ଦେବାର କ୍ଷମତା ମୋର ସେତେବେଳେ ନ ଥିଲା । ମୋଠାରୁ କୌଣସି ପ୍ରକାର

ସାନ୍ତ୍ୱନା ନ ପାଇ ସେ ପୁଣି ତା କଥା ଅଧେ ମୋତେ ଶୁଣାଇ, ଅଧେ ତା ମନକୁ ମନ ଭାବିବାକୁ ଲାଗିଲା—

"ଜମିଦାରଙ୍କର ଅସରନ୍ତି ଧାନ, ମା ଯାଇ ଦୁଇ ଗଉଣୀ କରଜ ମାଗିଲା, ବାବୁ ମନା କରିଦେଲେ । ଆଗରୁ କୁଆଡ଼େ ଆମ ଉପରେ ପାଞ୍ଚ ଗଉଣି ଧାନ ଅଛି । ହଉ ଥାଉ, ଧାନ ପାଇଲେ ତ ଆମେ ଏ ସବୁ ଧାନ ଫେରାଇ ଦେଇଥାନ୍ତୁ; ଧାନ ନ ପାଇଲେ ତାଙ୍କୁ ଫେରାଇବୁ ବା କୁଆଡୁ ? ମୁଁ ଦେଖିଛି, ସେଦିନ ସନ୍ଧ୍ୟାବେଳେ କଟକରୁ ମହାଜନ ଯାଇ ଦଶ ଶଗଡ଼ ଧାନ ତାଙ୍କ ଘରୁ ନେଇ ଆସିଲା । ନୋଟ ବଡ଼ାଏ ଧରି ଖୁସିରେ ଜମିଦାରେ ତାଙ୍କୁ ଧାନ ଦେଇଦେଲେ । ଆମେ ତାଙ୍କ ପ୍ରଜା, ସବୁ ଦିନର ମୂଲିଆ, ତାଙ୍କ ଗାଁର ପଡ଼ୋଶୀ ଲୋକ—ଆମକୁ କିଛି ହେଲେ ମିଳିଲା ନାହିଁ । ଆମେ ଧାନ ନେଇ ଧାନ ଦେଇଥାନ୍ତୁ, ତା ହେଲା ନାହିଁ । ଧାନ ନେଇ ସେ ବଡ଼ାଏ କାଗଜ ଦେଲା, ସେଥିରେ ସେ ଖୁସି । ଏହାକୁ ଧରମ ସହିବ ବାବୁ ? ଗାଁ ଯାକର ଅଧେ ଲୋକ ଧାନ ନ ପାଇ ଛଟପଟ ହେଉଥାନ୍ତି, ଯେତେ ନେହୁରା ହେଲେ ସେରେ ବି ତାଙ୍କୁ ମିଳେ ନାହିଁ । ଅଜଣା ଅଶୁଣା ଲୋକେ ବାହାରୁ ଯାଇ ଶଗଡ଼ ଶଗଡ଼ ଧାନ ବୋହି ଆଣନ୍ତି ।

"ତିନିଦିନ ଉପାସରେ ପିଠି ଗାଲରେ ଗୁଡ଼ାଏ ମାଡ଼ ଚାଖି ଧରି ମୁଁ ଲାଟ ଘରକୁ ପଳାଇ ଆସିଲି । ତାର ଦୁଇଦିନ ଆଗରୁ ମାଆକୁ ଜର । ସେ ଧାନ କୁଟି ଯାଇ ନ ଥିବାରୁ ଘରେ ଖିଦ କଣିକାଏ ବି ନ ଥିଲା । ମୋ ଦଶା ଦେଖି ତା ହାଲୁକ ଶୁଖିଗଲା, ତା ଜର ବି ସାଙ୍ଗେ ସାଙ୍ଗେ ଛାଡ଼ିଗଲା । ସେ ଆଉ କିଛି ଉପାୟ ପାଇଲା ନାହିଁ; ତାକୁ ସେତେବେଳେ କି ଦୁର୍ବୁଦ୍ଧି ଘୋଟିଲା କେଜାଣି, ବଗିଚାରୁ କାନ୍ଦାଏ କଦଳୀ କାଟି ନେଇ ସେ ଦୋକାନରେ

ଚିଙ୍କଦେଲା । ସେଇ ପଇସାରେ ଚାଉଳ, ଲୁଣ କିଣି ଆଣି ଭାତ ରାନ୍ଧିବସିଲା ।

"ଏ କଥା ଜମିଦାରଙ୍କୁ ଯାଇ କିଏ ସାଙ୍ଗେ ସାଙ୍ଗେ କହିଦେଲା । ରାଗରେ ଜଳି ପୋଡ଼ିହୋଇ ନିଜେ ଜମିଦାର ଆସି ବଗିଚାରେ ହାଜର । ତାଙ୍କ ସାଙ୍ଗରେ ଆମ ଗାଁ ଚଉକିଆ ମଧୁ ମଲ୍ଲିକ ବି ଆସିଥାଏ । ଜମିଦାର ଗାଁ ପ୍ରେସିଡେଣ୍ଟ କିନା, ଚଉକିଆ ସବୁବେଳେ ତାଙ୍କ ସାଙ୍ଗେ ସାଙ୍ଗେ ଥାଏ ।

"ଜମିଦାର ସେଇଆଡ଼ୁ ଖୁବ୍ ପାଟି କରି ଗାଳି ଦେଇ ଦେଇ ଆସୁଥାନ୍ତି । ତାଙ୍କ ପାଟିରେ ମୁଁ ଘର ପଛଆଡ଼େ ଲୁଚିଗଲି । ମା ଚୁଲି ପାଖରେ ବସି ଥରୁଥାଏ । ଆମ ଦୁଆରମୁହଁକୁ ଆସି ଜମିଦାର ହୁକୁମ ଦେଲେ, ଚଉକିଆ ଘର ଭିତରେ ପଶି ମାଆକୁ ଟାଣି ଘୋଷାରି ପଦାକୁ ନେଇଗଲା । କଣ କହିବି ବାବୁ, ତାକୁ ତଳେ ପକାଇ ଦେଇ ଯେଉଁ ଠିଅଁଗୋଇଠା ଦେଲା, ମୋ ଛାତି ଚମକି ପଡ଼ିଲା । ତଥାପି ମୁଁ ଚଣ୍ଡାଳ ମାଡ଼ ଭୟରେ ପଦାକୁ ବାହାରିଲି ନାହିଁ; ବାହାରି ବା କଣ କରିଥାନ୍ତି ?

"ଗାଁଯାକର ଲୋକେ ରୁଣ୍ଡ ହୋଇଗଲେ । ସମସ୍ତେ ଜମିଦାରଙ୍କ ପଟିଆ ହୋଇ ମାଆକୁ ବୁହେ ଲେଖାଏଁ ମନ ବୋଧ କରି ଗାଳି ଦେଲେ । ରାଣ୍ଡୀ, ଚୋରଣୀ, ଗାଁ ଯାକର ତ ଏଇ ଚୋରି କରୁଛି । କାହା ଘରୁ ଓଳିଆ କେବେ ଚୋରି ଯାଇଥିଲା, କାହା ବାଡ଼ିରୁ ନଡ଼ିଆ କିଏ ନେଇଥିଲା, କାହାର ଦାଆ ବାଲ୍ଲରୁ ମିଳିଲା ନାହିଁ—ଗଲା ପାଞ୍ଚ ବର୍ଷର ଚୋରି ସବୁ ମୋ ମା ମୁଣ୍ଡରେ ସମସ୍ତେ ଲଦିଦେଲେ । ମୁଁ ଖାଲି ଓଳିତଳେ ପେଟେଇପଡ଼ି ବକଳରେ ଧାର ହେଉଥାଏ । ମା ମାଡ଼ ଖାଇ ଯାହା ଛଟପଟ ହେଉଥାଏ ସିନା, କିନ୍ତୁ ପାଟିକରି ପଦେ କାନ୍ଦି ବି ପାରୁ ନ ଥାଏ । ଶେଷକୁ ପଣ୍ଡିତ

ଯଦୁ ମିଶ୍ର ବୁଢ଼ା ବାହାର ପଡ଼ି କହିଲେ, 'ଏ କଣ ଖାଲି ଗୁେଇଣୀ ? କଞ୍ଚାଖାଇ ଡାଆଣୀ; ସେ ଦିନ ମୋ ପିଲାଟାକୁ ଆଖି ପକାଇଲା ଯେ, ଗଡଯାକ ତାକୁ ମୋଡ଼ି ରକତ ପିଇବାରେ ଲାଗିଲା । ପିଲାଟା ଯେଉଁ କାନ୍ଦ କାନ୍ଦୁଛି ! ମୁଁ ଅପରାଜିତା ପଢ଼ି ତାକୁ ଝାଡ଼ିଲାରୁ ସେ ଯାଇ ଥୟ ହେଲା ।'

"ସତ କହୁଛି ବାବୁ, ମୁଁ ଆଉ ସମ୍ଭାଳିପାରିଲି ନାହିଁ । ମୋ ମାଆକୁ ମାଡ଼ ଦେଲେ, ଗାଳି ଦେଲେ । ପୁଣି ବାଳେ ଲୋକଗୁଡ଼ାକ କଞ୍ଚାଖାଇ ଡାଆଣୀ ବୋଲି କହିବେ । ମୁଁ ତ ଯାଙ୍କର କାହିଁ ଖାଏ ନାହିଁ କି ଧାରେ ନାହିଁ ।

"ରାଗ ତ ବ୍ରହ୍ମରାକ୍ଷସ । ମୁଁ ରାଗରେ ଅନ୍ଧ ହୋଇଗଲି । ସେଠୁ ଗୋଟାଏ ଭଙ୍ଗା ଇଟା ଧରି ଫୋପାଡ଼ି ମାରିଲି ଯେ, ଯାଇ ବୁଢ଼ା ଗୋସାଇଁ ମୁଣ୍ଡରେ ବାଜିଲା । 'ବାପ ଲୋ ମଲି ଲୋ' କହି ସେ ସେଠାରେ ବସି ପଡ଼ିଲା । ଅଉମାନେ ମୋତେ ଧରିବାକୁ ଯାଉଥିଲେ, ମୁଁ ପୁଣି ଇଟା ଧରି ଉଞ୍ଚାଇବାରୁ ଡରି ସମସ୍ତେ ପଳାଇଗଲେ ।

"ମୁଁ ମାଆକୁ ଧରାଧରି କରି ନେଇ ଘରେ ଶୁଆଇଲି । ଦେହଯାକ ଧୁଆଧୋଇ କରି ସଫା କରିଦେଲି । ମାଡ଼ରେ ପିଠି ପାଖ ଲାଲ ପଡ଼ି ଯାଇଥାଏ, ଠାଏ ଠାଏ ଅବୁ ବାହାରି ପଡ଼ିଥାଏ । ମୁଁ ଟିକିଏ ତେଲ ଗରମ କରି ସେଥିରେ ଲଗାଇ ତାକୁ ଆଉଁଷି ଦେଲି ।

"ଦି ଘଣ୍ଟା ବି ଯାଇ ନାହିଁ, ପୁଲିସବାଲା ଯାଇ ମୋ ପାଖରେ ହାଜର । ମୁଁ ତାଙ୍କୁ ଯେତେ ନେହୁରା ହେଲି, ମା ଯେତେ କନ୍ଦାକଟା କଲା, ସେ ଟିକିଏ ହେଲେ ଶୁଣିଲେ ନାହିଁ । ମୋତେ ବାନ୍ଧି ଘୋଷାରି ନେଇ ଆସିଲେ ।

"ସେଇଦିନଠୁ ମୁଁ ଏଠି ପନ୍ଦରଦିନ ତାରିଖ ପଡ଼ିଥିଲି । ମୋତେ କଚେରୀକୁ ନେଇଥିଲେ । ସେଠି କଣ ହେଲା କେଜାଣି, ପୁଣି ସନ୍ଧ୍ୟା ବେଳକୁ ଏଠାକୁ ନେଇ ଆସିଲେ । ଜମାଦାର ବାବୁ କହୁଥିଲେ, ପଚିଶ ତାରିଖକୁ ତାରିଖ ହୋଇଛି ।

"ଅଚ୍ଛା, ତାରିଖ ହେଲେ କଣ ହୁଏ ବାବୁ ? ଏଠି ଏମାନେ ସବୁ କହୁଛନ୍ତି, ଜେଲ୍ ହେବ ଦୁଇ ବରଷ କି ଚାରି ବରଷ କି ସାତ ବରଷ, ତା ଠିକ୍ ନାହିଁ । ଜେଲ୍ ହେବ ତ ଭଲ କଥା, ମଉଜରେ ମୁଁ ଏଠି ରହି ଖାଇବି । କେବଳ ମା କଥାଟା ଯାହା ମୋ ମନେ ପଡ଼ିଯାଉଛି । ସେ ତ ଉଠିପାରୁ ନ ଥିଲା, ଧାନ କୁଟିବ କିପରି ଯେ ପେଟକୁ ଖାଇବ । ଖାଲି ତା ଦେହ ଭଲ ହୋଇଯିବାଯାଏ ମୁଁ ତା ପାଖରେ ଥାଆନ୍ତି କି ? ସେ ତ କେତେ ବିକଳ ହୋଇ କାନ୍ଦୁଥିବ !"

ମାର କାନ୍ଦ କଥା କହୁ କହୁ ବିଶୁ କାନ୍ଦି ପକାଇଲା । ତା ପାଟିରୁ ଆଉ କଥାବାହାରିଲା ନାହିଁ । ମୁଁ ଯେ ଏମାନଙ୍କ ଶ୍ରେଣୀର ନୁହେଁ—ଏହି ଗର୍ବ ମୋତେ ଏ ପର୍ଯ୍ୟନ୍ତ ଦୂରରେ ରଖିଥିଲା । ବିଶୁର କଥା ଲହରରେ ମୁଁ ଯେ କେତେବେଳେ ତାହା ଭୁଲିଗଲିଣି, ତା ଆଉ ଖିଆଲ ନାହିଁ । ମୋର ସାନ ଭାଇ ପରି ମୁଁ ଉଠିଯାଇ ବିଶୁକୁ କୁଣ୍ଢାଇ ପକାଇଲି, ତା ଆଖିରୁ ଲୁହ ପୋଛି ଦେଲି । ଫଳ ହେଲା ଠିକ୍ ବିପରୀତ । ସେ ଓଲଟି କରି କଇଁ ହୋଇ ଏତେ ଜୋରରେ କାନ୍ଦିଲା ଯେ, ଅନ୍ୟମାନେ ଆସି ଆମ ପାଖରେ ଜମା ହୋଇଗଲେ ।

ଜେଲଖାନାର ମୋର ସେଇ ଦୁଇଦିନର ସାଥୀ ବିଶୁକୁ ମୁଁ କଦାପି ଭୁଲିପାରିବି ନାହିଁ । ଜେଲରୁ ଆସିବା ପରେ ମୋର ପ୍ରଥମ କାର୍ଯ୍ୟ ହୋଇଥିଲା ବିଶୁ ମାଆର ସନ୍ଧାନ ନେବା । ମାତ୍ର ସନ୍ଧାନ ନେଇ

ଯାହା ବୁଝିଲି, ତାହା ଶଶୁ ଏ ପର୍ଯ୍ୟନ୍ତ ମଧ୍ୟ ଜାଣି ନାହିଁ । ତାର ନ ଜାଣିବା ହିଁ ଭଲ । ଜାଣିଲେ ବୋଧହୁଏ ତାର ଧୈର୍ଯ୍ୟ ଏକାବେଳକେ ସୀମା ଲଙ୍ଘିଯିବ । ବୁଢ଼ୀ ସେହି ଦେହଦୁଃଖରେ ଶେଷ ନିଶ୍ୱାସ ଛାଡ଼ିଛି । ମେହେନ୍ତରମାନେ ବୁଢ଼ୀର ଶବକୁ ଘରୁ ଘୋଷାରି ନେଇ ମଶାଣିରେ ପକାଇ ଦେଇଛନ୍ତି । ସେ ଘର ବର୍ତ୍ତମାନ ମଧ୍ୟ ମାଲିକ କୁଆଡ଼ିର ।

ବାଶୁର ଖବର ଏ ପର୍ଯ୍ୟନ୍ତ ସବୁ ନାହିଁ । ପୁଲିସ କୁଆଡ଼େ ରିପୋର୍ଟ ଦେଇଛି ଯେ — ଶଶୁ ବଡ଼ ଡାକୁ ସେ ଯେପରି ପ୍ରବୀଣ ଚୋର, ସେହିପରି ନାମଯାଦା ଖୁଣୀ । ଯଦୁ ମିଶ୍ରଙ୍କୁ ଖୁଣ କରିବାକୁ ବହୁଦିନରୁ ଚଢ଼ାଉଥିଲା ; ସୁଯୋଗ ଦେଖି ତାଙ୍କ ଛାତିକୁ ଫଟାଇ ଦେଇଛି । ବଡ଼ ମାଛର ଝୋଳ ଖାଇସାରି ପ୍ରେସିଡେଣ୍ଟ ଜମିଦାରଙ୍କ ଆଗରେ ପୁଲିସ ବାବୁ ନିଶ ମୋଡ଼ି କସରତ ଦେଖାଇ କୁଆଡ଼େ କହୁଛନ୍ତି— "ଅନ୍ତତଃ ସାତଟା ବରଷ ମାମୁଘର ଦେଖାଇଦେବ ।"

ତା ହେଉ ଭଲ । ଯେତେ ବେଶି ବର୍ଷ ଶଶୁ ଜେଲରେ ରହିବ, ସେତେଦିନ ସେ ମା କଥା ଜାଣିପାରିବ ନାହିଁ । ଯେତେବେଳେ ସେ ଜେଲ୍ ସମୟ ପୂରାଇ ଘରକୁ ଆସି ତା ମାଆକୁ ଖୋଜିବ, ସେତେବେଳେ............ ?



# ନରକପୁରୀ

"କାଁ ନଅଙ୍କ ଅସି ପଡ଼ିଲା, ମୁଠାଏ ଭିକ୍ଷା କି ଅଧଲା ଚାଉଳଠାଏ ବି ମିଳିଲା ନାହିଁ । କେତେ କାହାଁ ତକ ମଣିଷ ବୁଲିବ ? ଯୁଆଡ଼େ ଯାଉଛ, ସେ ମାର ମାର ଧର ଧର କରୁଛି"—ଗୋଡ଼ ଘାଆରେ କନା ଖଣ୍ଡେ ଗୁଡ଼ାଉ ଗୁଡ଼ାଉ ଲକ୍ଷିଆ ଅଧେ ମନକୁ ମନ ଅଧେ ସମସ୍ତଙ୍କୁ ଶୁଣାଇ ଶୁଣାଇ କହୁଥିଲା ।

ଅଳ୍ପ ଦୂରରେ ମଟୁଆ ଦାମ୍ଭ ନିକୁଟି ନିଜ ଝଣ୍ଟା ଯାଦୁକୁ କୁଣ୍ଡାଇବାରେ ଲାଗିଥିଲା । ସେ ଲକ୍ଷିଆକୁ ଜବାବ ଦେବାକୁ ଯାଇ କହିଲା, "ଅଉ ଏଠି ଚଳିବ ହେବ ନାହିଁରେ । ଏଠି ଯେତେ ବଡ଼ଲୋକ, ସବୁ ଅମର ପର ହୋଇଗଲେଣି ।"

"ଦୁଣି ଏ କାଙ୍ଗାଳଗୁଡ଼ାଙ୍କୁ ଦେଖ, କୁଆଡ଼ୁ କୁଆଡ଼ୁ ଅସି ଯେ ଏଠି ଜୁଣ୍ଡ ହୋଇ ଯାଉଛନ୍ତି, ତା ଠିକ୍ ନାହିଁ । ଯେଉଁଠିକି ଆମେ ଦୁଇ ଚାରିଜଣ ମାଗିବାକୁ ଯାଉଥିଲୁ, ସେଠି ଯାଇ ଦୁଇଶ ଚାରିଶ ଜମା ହେଉଛନ୍ତି, ବାବୁ ଭଲା କେତେ ଦେବ ? ଆମ ଦାନାଗଣ୍ଡାକ ଏ ଅଲଜଣିଆ ସାଇଲେ"—ଜଗୁ ନିଜ ଚିଶେଇ ବଙ୍କା ମୁହଁକୁ ଚୋଠାଏ ପଥରରେ ଛେଚି ସିଧା କରୁ କରୁ କଥାପଦକ ଏପରି ଭାବରେ କହିଲା, ସତେ ଯେପରି ସେ ଏ କାଙ୍ଗାଳଙ୍କଠାରୁ ବହୁତ ଉଚ୍ଚରେ ; ଏ ଗୁଡ଼ାଙ୍କୁ ସେ ଦୁଇ ଆଖିରେ ଦେଖିପାରୁ ନାହିଁ ।

ଦୁଇ ଅଣ୍ଟୁ ମଝିରେ ମୁଣ୍ଡ ରଖି ଦନେଇ ବୁଢ଼ା ଏତେବେଳଯାଏ ଚୁପ୍ ହୋଇ ବସିଥିଲା । ତାକୁ ବାପା ବୋଲି କେତେ ଡାକନ୍ତି ; ତା ସଙ୍ଗରେ ଥଟ୍ଟା ଲଗାଇବାର ସୁବିଧା ନେବା ଅଛାରେ ସମସ୍ତେ ତାକୁ ଅଜା ବୋଲି ଡାକନ୍ତି । ସେ ଅଜ

ସମ୍ଭାଳି ନ ପାରି ତା ମୁଣ୍ଡ ଠେକି କହିଲା,"ଅରେ ଦୁନିଅ ଚାହାଁ ଦୁନିଅ; ଭଲ ମିଳୁ ନାହିଁ, ପଇସା ମିଳୁ ନାହିଁ, କଣ ହେଲା ସେଇଠୁ ? କେମିତି ମିଳିବ ? ତୁମେ ଯେ ଦୁନିଅ ଚାହିଁଲ ନାହିଁ । ମୁଁ କାଲି ସେ ଗୁଡ଼ଅ ସାହୁ ଦୋକାନକୁ ଯାଇଥିଲି । ଟଗାଟାଏ ଗୁଡ଼ ଗୁଲା ମାଗିଲି; ମୋତେ କହିଲା, ହାତ ଦେଖା । ଯେମିତି ହାତ ଦେଖାଇଲି, ଚୁଲିରୁ ଦାଉଦାଉ ଖଣ୍ଡେ କାଠ ମୋ ହାତରେ ପକାଇଦେଲା । ହେଇଟି ଦେଖ, ହାତ ପୋଡ଼ିଯାଉଛି । ହାତ ପୋଡ଼ୁ, ମୁଁ ତ ଦୁନିଅ ଚାହିଁଲି ।"

ପାଗଳଟାଏ, ତା କଥାକୁ କେହି ମନ ଦେଲେ ନାହିଁ । ଲହିଅ ଆଜ କଣ କହି ଅସୁଥିଲା, ଶଙ୍କରର ମେଘ ଗର୍ଜନ ପାଟି ଶୁଣି ସମସ୍ତେ ଚମକି ପଡ଼ିଲେ । ଶଙ୍କର ବଡ଼ କଳହପ୍ରିୟ ବୋଲି ତାର ଖ୍ୟାତି ଅଛି । ସେ ଖଣ୍ଡେ ଧୂଆଁ ପତ୍ର କେଉଁଠୁ ଆଣି ପକା ବାଉଥିଲା । ରତନୀ ପୁଅ ସେବାଟେ ଦଉଡ଼ି ଯାଉ ଯାଉ ତା ଗୋଡ଼ଟା ଶଙ୍କର ଉପରେ ବାଜିଗଲା । ଆଉ ଯାଏ କୁଆଡ଼େ ? ଶଙ୍କରର ଆରମ୍ଭ ହେଲା ପାଟି ;—ରତନୀ ପୁଅଟା ଯେ ଛତରଖିଆ, ତା ବାପର ଠିକ୍ ନାହିଁ, ଭଉମଗା ଢଙ୍ଗାଳ ଛୁଆଟାଏ, ଏଇ କେତେପଦ ସେ ନାନାପ୍ରକାର ବ୍ୟାଖ୍ୟା କରି ସମସ୍ତଙ୍କୁ ଶୁଣାଇ ଶୁଣାଇ ତାକୁ ଜୀଅନ୍ତା ମଶାଣିରେ ପୋତିବାର ବ୍ୟବସ୍ଥା କରିବାରେ ଲାଗିଗଲା ।

ରତନୀ ଶଙ୍କର ଘରେ ଲୁଗାରେ କଣ କୁଣ୍ଡିଆ କରି ପକାଇଥିଲା । ସକାଳୁ ଯାଇ ତାକୁ ଖାଲ ପାଣିରେ ଧୋଇ ସଫା କରି ଅସୁ ଅସୁ ଶଙ୍କରର ପାଟି ଶୁଣି ସେ ମଧ୍ୟ ସମାନ ସ୍ୱରରେ ପାଟି ଆରମ୍ଭ କରିଦେଲା । ଦୁହିଁଙ୍କ କଳି ଗୋଳରେ ସେ ଜାଗାଟା ଫାଟି ପଡ଼ିଲା ।

ଦାନେଇବୁଢ଼ା ଆଜ ଥରେ ଆଣ୍ଠୁ ଉପରୁ ମୁହଁକୁ ଟେକି ମନକୁ ମନ କହିଲା—"ଦୁନିଆ ଟଙ୍କା, ଦୁନିଆ ।"

ଲଖିଆ, ଜଗା, ଗୋବରା, ମଧୁଆ ସମସ୍ତେ ସାଙ୍ଗେ ସାଙ୍ଗେ ଦୁଇ ଦଳ ହୋଇଗଲେ । କେତେଜଣ ଶଜଣ୍ଟ ପଠ ନେଲେ, କେତେଜଣ ରତମୀ ପଠ ନେଲେ । ସେ ପାଖରୁ କମଲୀ, ବୁଲୀ ଆଦି ଯେ ଯୁଆଡ଼େ ଥିଲେ ଆସି ଜମା ହୋଇଗଲେ । କିମିଷକ ମଧ୍ୟରେ ସେଠାରେ ଖଣ୍ଡପ୍ରଳୟ ଲାଗିଗଲା । ପାଟିରେ ଆଖପାଖ ଅଞ୍ଚଳ ଲୋକଙ୍କର କାନ ବଧିରା ହୋଇଗଲା ।

ଏତିକିବେଳେ କୁସୁମ ଗୁଡ଼ାଏ ଗୁଲିଗୁଲା କୁଆଡ଼ୁ ଆଣି ସେଠାରେ ଗୁରିଆଡ଼କୁ ଛୁଆଡ଼ି ପକାଇଦେଲା ! ମନ୍ତ୍ରପାଣି ପଡ଼ିଲା ପରି ସମସ୍ତେ ତୁନୀ ହୋଇଗଲେ । ତାକୁ ଗୁଲିଗୁଲା ଗୋଟାଇବାରେ ଥୋକେ ଏତେ ବ୍ୟସ୍ତ ରହିଲେ ଯେ ଆଉ ପାଟି କରିବାକୁ ସମୟ ମିଳିଲା ନାହିଁ ।

× × × ×

ବକ୍‌ସିବଜାର ମାର୍କେଟର ପଛ ପଟରେ ଗୋଟିଏ ଅଧା ଭଙ୍ଗା କୋଠା । କେଉଁ ମାନ୍ଧାତା ଅମଳରୁ ଯେ ତାହା ସେପରି ଠିଆ ହୋଇଛି, ସେମାନେ କେହି ଜାଣନ୍ତି ନାହିଁ । ସହରକୁ ଯେତେବେଳେ ଯେଉଁ ଭିକାରୀ, ରୋଗୀ, ମାଗନ୍ତା ଆସିଛନ୍ତି, ସେମାନେ ସେଠାରେ ଆଶ୍ରୟ ନେଇଛନ୍ତି । ଯେଉଁମାନଙ୍କୁ ସମସ୍ତେ ଛି ଛି କରି ଘୃଣା କରନ୍ତି । ପିଣ୍ଡା ମଡ଼ାଇ ଦିଅନ୍ତି ନାହିଁ, ସେମାନଙ୍କୁ ଏ ରାଜନଅର ଭଳି କୋଠାଘର ଯେପରି ଆନନ୍ଦରେ ଡାକିଆଣି ନିଜ କୋଳରେ ଆଶ୍ରା ଦେଇଛି ।

କେହି କାହାର କଥା ନୁହନ୍ତି କି ଶୁଣା ନୁହନ୍ତି ; ଟଙ୍କା ପରୱାୟ କରୁଛି ନାହିଁ । ତଥାପି ସେଠାରେ ସମସ୍ତେ ଭାଇ ଭଉଣୀ ପରି

ଘର ସଂସାର ପାତି ବସିଛନ୍ତି । ଘଣ୍ଟା ଘଣ୍ଟାକେ କଳଗୋଳ, ହସ ଖୁସି, ଗପସପ, ଖିଅପିଅ, ଦାଅନାଅରେ ସେ ସ୍ଥାନ ସବୁବେଳେ ସରସ ହୋଇ ଉଠିଛି ।

ସେ ଘର କିଏ କରିଛି, କାହିଁକି କରିଛି, ସେ କଥା ଜାଣିବା କାହାର ଦରକାର ପଡ଼ି ନାହିଁ । ଏବଂ ଦିନ ଝଡ଼ତୋଫାନ ହୋଇ ସହରରେ ବହୁତ ଚୁଲଘର ଭାଙ୍ଗିପଡ଼ିଛି, ଗଛ ଉପୁଡ଼ି ଯାଇଛି, ଲୋକେ ନାନା ହଇରାଣ ହୋଇଛନ୍ତି । କିନ୍ତୁ ଏମାନେ କୋଠାଘରେ ମହାମଉଜରେ ରାତିଟି କଟାଇ ଦେଇଛନ୍ତି । ସକାଳୁ ମେଘ ଛାଡ଼ିଗଲା ପରେ ସମସ୍ତେ ଏକାଠି ବସି ଖୁସି ଗପସପ କରୁଛନ୍ତି । ମଧୁଆ ହଠାତ୍ କହିଉଠିଲା, "କାଲି ବଡ଼ଲୋକେ ହରକତ; କିନ୍ତୁ ଆମର ମହାମଉଜ । ଏ ଘର ଆମପାଇଁ କିଏ କରିଥିଲା କେଜାଣି । କିନ୍ତୁ ଯେ କରିଛି, ତାର ନିଶ୍ଚୟ ବହୁତ ବଡ଼ତି ହେବ । ଏଠି ରହିଲା ଦିନୁ ତ ମୁଁ ମୋର ଗାଁ ଘର ସବୁ କଥା ଭୁଲିଗଲିଣି ।"

ଜଗୁ ମାମଲତକାରଙ୍କ ପରି କହିଲା, "ଛୁଆ, ଏ ଘର ପରା ଗୋଟାଏ ବଡ଼ ମହାଜନ ତୋଳାଇ ଦେଇଛି । ତୁମ ଭଳି ମାଗନ୍ତା କାଙ୍ଗାଳ ସବୁ ଆସି ରହିବା ପାଇଁ ଧର୍ମଶାଳା କରିଛି ରେ ଧର୍ମଶାଳା । ବେପାରରୁ ସେ ପୁଳା ପୁଳା ଟଙ୍କା ପାଉଥିଲା କି ନା, ସେଇ ଟଙ୍କାରେ ଏହାକୁ କଲା ।"

ନଟିଆ କହି ଉଠିଲା, "ନାଇଁ ନାଇଁ ତୁ କଣ ଜାଣୁ ? ୟା ନାଁ ଗୋପବନ୍ଧୁ କୋଠା । ଗୋପବନ୍ଧୁ ବୋଲି ଆଗେ ଗୋଟାଏ ବଡ଼ ରଜା ଥିଲା । ସେଇ ଏ ଘର ଆମ ପାଇଁ କରି ଦେଇଛନ୍ତି । ବଡ଼ ଧର୍ମ କାମ କରିଛନ୍ତି ଏକା ।"

ଦନେଇ ବୁଢ଼ା ଗୁଣୁ ଗୁଣୁ ହୋଇ କହିଲା, "ଗୋପବନ୍ଧୁ, କି ନାଁଟା ନ କହିଲୁ ରେ । ସେବର୍ଷ ଆମ ଗାଁ ବଢ଼ିପାଣିରେ ଭାସିଗଲା ।

ଲୋକେ ଛିନ୍ନଛନ୍ନ ହୋଇ କୁଆଡ଼େ ଯେ କାଏ ଗୁଲିଗଲେ, ତା ଠିକ୍ ରହିଲା ନାହିଁ । ମୁଁ ଶୁଣିଛି, ଗୋପବନ୍ଧୁ ବୋଲି ଗୋଟିଏ ଲୋକ ଯାଇ ଲୋକଙ୍କୁ ଚୂଡ଼ା ଗୁଡ଼ାଳ ଦେଲେ, ଓଡ଼ାରେ ତାଙ୍କୁ ଆଣି ଅର ଗାଁରେ ଲଗାଇଲେ । ତାଙ୍କ ଯୋଗେ ଶହ ଶହ ଲୋକ ବଞ୍ଚିଗଲେ ସେ ବର୍ଷ । ସେତେବେଳେ ଦୁନିଆ ଥିଲା ଓଲଟା । ଏ ଦୁନିଆ ତ ନ ଥିଲା ।"

ଗୋବର କହିଲା, "ହଁ, ଗୋପିଆ କରୁ ବା ବନ୍ଧୁଆ କରୁ, ଯେ କରିଛି ସେ ମଣିଷ ନୁହେ ଦେବତା । ଏ ଖଣ୍ଡିକ ସେ କାର ନ ଥିଲେ ଅମ ଅଚିହ୍ନା କାଲି ରାତିରେ କଣ ହୋଇଥାନ୍ତାଠି ।"—ବିପଦ କଳ୍ପନାରେ ତା ଅନ୍ତର ଯେପରି ଥର ଉଠୁଛି ।

ଜଗୁଆ କଥା ଭାଙ୍ଗିଦେଇ ଲଖିଆ ଘର ବିଷୟରେ କହିଥିବାରୁ ଜଗୁଆ ମନେ ମନେ କୁହୁଳୁଥିଲା । ସେ ଅଜ ସମ୍ଭାଳି ନ ପାରି କହି ପକାଇଲା, "ଛେନା ହୋଇଥାନ୍ତା ?—ଅମେ ଯାଇ ଗଛମୂଳେ ରହିଥାନ୍ତେ ? ଯେଉଁଠି ଘର ନାହିଁ, ସେଠି କଣ ଲୋକ ରହୁ ନାହାନ୍ତି । ତୁମେଗୁଡ଼ାକ ତ ଭିକମଗା କାଙ୍ଗାଳ, କଣ ଜାଣ ? ଲଖିଆ କହୁଛି କଣନା, ଏ ଘର ଗୋଟାଏ ରଜା କରିଛି । ମୁଁ ଭଲ କରି ଜାଣେ, ଗୋପବନ୍ଧୁ ବୋଲି ଜଣେ ବଡ଼ ମହାଜନ ଥିଲା ; ତାର ପିଲାଏ ଏମାନ୍ତକୁ କରି ଦେଇଛନ୍ତି । ତାକୁ ୯୦ କବର ଦିଆଯାଇଛି କି ନା, ସେଇ କବର ଉପରେ ଏ ଘର ହୋଇଛି ।"

କବର କଥା ଶୁଣି ଶଳଙ୍ଗୀ, ରତନୀ ପ୍ରଭୃତି ମନକୁ ମନ ଚମକି ଉଠିଲେ । ଏଠି କବର ? ତାଙ୍କୁ ତ ରାତିରେ ଡର ମାଡ଼ିବ । ମାସ କେତେ ରାତି ଯେ ବିନା ଡରରେ କଟିଗଲାଣି, ସେକଥା ଅଜ ସେମାନେ ଭାବିପାରିଲେ ନାହିଁ ।

ଲଖିଆ କଥା ନ ରହିବାରୁ ସେ ଚଟିଗଲା—"କବର ଅଛି ନା ତୋ ବୋପା ମୁଣ୍ଡ ଅଛି—" କହି ସେ ଦାନ୍ତ ଦେଖାଇଲା ।

ଏହା କି ଜଗୁଆ ସହେ ? ସେ ଅସି ଠ'ଇ କରି ଲଙ୍ଗିଆ ଗାଲରେ ଏକ ଚଟକଣା କଷଦେଲା । ଲଙ୍ଗିଆ ଅନ୍ୟ ଉପାୟ ନ ପାଇ, ତା ଗାଲକୁ ଏଡ଼େ ଜୋରରେ କାମୁଡ଼ି ଦେଲା ଯେ, ଦାନ୍ତ ଫୁଟି ଗାଲରୁ ରକ୍ତ ଝରଝର ବୋହି ପଡ଼ିଲା ।

ଖଣ୍ଡଯୁଦ୍ଧ ଲାଗି ଅସୁଥିଲା । କୁସୁମ କୁଆଡ଼େ ଥିଲା, ଦଉଡ଼ି ଅସି ସେ ଦୁହିଙ୍କ ମଝିରେ ଠିଆ ହୋଇଗଲା—ଦୁହେଁ ପଛକୁ ଘୁଞ୍ଚିଗଲେ ।

ଦନେଇବୁଢ଼ା ପୁଣି ଥରେ ବାନ୍ଧି ଉଠିଲା—"ଦୁନିଆ ଚାଲିଛି ଦୁନିଆ ।"

× × × ×

ଗାଁ ଗଣ୍ଡା ଓ ସମାଜ ପରିତ୍ୟକ୍ତ ଏଇ ଅବହେଳିତ ଓ ଘୃଣିତ ସଂସାରରେ ସବୁଠାରୁ ପୁରୁଣା ଦନେଇ ପାଗଳା ଆଉ ସବୁଠାରୁ ନୂଆ କୁସୁମ । କିନ୍ତୁ ଦୁହିଁଙ୍କର ସ୍ୱଭାବ ଚରିତ ଠିକ୍ ଓଲଟା । ଦନେଇର କେହି ଶତ୍ରୁ ନାହାନ୍ତି କି ମିତ୍ର ନାହାନ୍ତି; ତାକୁ କେହି ପଚରନ୍ତି ନାହିଁ, ତାର ଅସ୍ତିତ୍ୱ ମଧ୍ୟ କେହି ଉପଲବ୍ଧି କରିପାରନ୍ତି ନାହିଁ । ମାତ୍ର କୁସୁମର ଶତ୍ରୁ ସମସ୍ତେ, ପୁଣି ତା ଆଗରେ ସମସ୍ତେ ଗୋଟାପୁଚ୍ଛା ଡାକ । କୁସୁମ ନ ଥିଲେ ତାଙ୍କର ବୋଧହୁଏ ସଂସାର ଅଚଳ ହୋଇ ପଡ଼ନ୍ତା । ଅଧେ ଦିନ କୁସୁମ ସେମାନଙ୍କୁ ଖାଇବାକୁ ଯୋଗାଏ, ଭଲ ଭଲ ଜିନିଷ କୁଆଡ଼ୁ ଆଣିଦିଏ । କୁସୁମକୁ ସମସ୍ତେ ଡରନ୍ତି ତା ଆଗରେ, ଖାତିର ବି କରନ୍ତି; କିନ୍ତୁ ପଛରେ ସେ ଯେ ଗୋଟାଏ ବଡ଼ ଚୋରଣୀ, ଚୋରି କରି ଏତେ ଜିନିଷ ନିତି ଆଣୁଛି— ଏକଥା ଆଲୋଚନା କରିବାକୁ ଛାଡ଼ନ୍ତି ନାହିଁ । ଈର୍ଷା, ରଭସ ପ୍ରଭୃତି ତ ହିଂସାରେ ପୋଡ଼ିଜଳି ଯାଉଛନ୍ତି । କାଲିକାର ଟୋକିଟା, ସେ ଯାଇ ଯାହାକୁ ଯାହା ମାଗୁଛି, ସେ ଦେଇ ପକାଉଛି ।

ଥିଇ ସେମାନେ ? ଏତେ କାଳ ଏଠାରେ ରହି, ଏତେ ଧନ ଦୌଲତ ମଗାମଗି କରିବାରେ ଅଭ୍ୟସ୍ତ ହୋଇ ସୁଦ୍ଧା ତାଙ୍କୁ କେହି କରୁ ଦେଇ ନାହିଁ ।

ସେ ଦିନ କୁସୁମ ବନ୍ତୁଳିଏ ବଡ଼ କୁଅଡ଼ୁ ଆଣିଥିଲା, ସମସ୍ତଙ୍କ ଗୋଟାଏ ଗୋଟାଏ ବାଣ୍ଟି ଦେଇ ଗଲା ଭାଇ ନିଜ କାମରେ । ବଡ଼ଟା ଖାଇ ଖାଇ ଜଗୁଆ କହିଲା, "ଯାହା ହେଉ, କୁସୁମ ଯୋଗେ ଏତେ-ଦିନେ ଗୋଟାଏ ଭଲ ବଡ଼ ଖିଆ ହେଲା ।"

ଲଖିଆ ପଚାରିଲା, "ସେଇଟା ଚୋରଣୀଟାଏ ନା କଣ ? ବଡ଼ କଠାଠାଏ କୁଅଡ଼ୁ ନେଇ ଅସିଲା ?"

ଶଙ୍ଖ ଚମକି ଉଠିଲା, "ଚୋରଣୀଟାଏ, ଆମ ଏଠୁ ତ ସେ ସବୁ ଜିନିଷ ଚୋରି କରି ନେଇ ଯାଉଥିବ ! ମୁଁ ସେଇଆ କହୁଥିଲି, ଚୋରଣୀ ନ ହେଲେ ସେ ଏତେ ଜିନିଷ ପାଆନ୍ତା କୁଆଡ଼ୁ ? ଆମେ ତ ମାଗିବାକୁ ଗଲେ ଆମକୁ ଛି ଛି କରୁଛନ୍ତି, ଉପରକୁ ପାଣି ଫୋପାଡ଼ୁଛନ୍ତି; ସେ ତ ଯାହା ମନ ତା ନେଇ ଆସୁଛି ।"

ରତନୀ କହିଲା, "ସତ କଥା, ମୁଁ କାଲି ମୋ ଟିଣରେ ଗୋଟାଏ ଗୁଲ୍ଲୁଗୁଲା ରଖିଥିଲି; ଅଜି ସକାଳକୁ ଦେଖିଲାବେଳକୁ କିଛି ନାହିଁ । ସେଇ ବଜ୍ଜାତ ତ ନେଇଥିବ ।"

"ହଁ, ସେଇ ବଜ୍ଜାତ ତ ନେଇଥିବ ।"—ରତନୀକୁ ଯବତ କରିବା ଉଦ୍ଦେଶ୍ୟରେ ଜଗୁଆ ମୁହଁ ବିକୃତ କରି ଛୁଗୁଲେଇ କହିଲା, ତୁମ ଛତରଖାଇଙ୍କର ଏ ସ୍ୱଭାବ ଗଲା ନାହିଁ । ସେ ପରା କାଲି ଚାରିଟାବେଳେ ଅଣ୍ଟିଏ ଗୁଲ୍ଲୁଗୁଲା ଆଣି ତୁମକୁ ଦେଇଥିଲା ବୋଲି କହୁଥିଲ । ମୁଁ ଥିଲେ କଣ ମୋ ଭାଗ ଦୁଇଗୁରଟ୍. ପଡ଼ ନ ଥାନ୍ତା ? ମୋ କରମ ମନ୍ଦ, ସେ ଅଣ୍ଟିଏ ଗୁଲ୍ଲୁଗୁଲା ଦେଲା, ଅଜ ରାତକୁ ଚୋର ଗୋଟାଏ ଗୁଲ୍ଲୁଗୁଲା ଚୋରି କରି ନେଇଗଲା, ଭାରି ସାଧୁ ଏ !

ଦନେଇ ବୁଢ଼ା ବାଡ଼ିର ଏମୁଣ୍ଡ ସେମୁଣ୍ଡ ପରଖି କରୁ କରୁ ଟିକିଏ ଉପରକୁ ମୁହଁ ଟେକିଲା । ତା ପରେ ଗୋଟାଏ ମୁରୁକିହସା ଦେଇ କହିଲା, "ଦୁନିଆ ଚଷା, ଦୁନିଆ ।"

ଘଣ୍ଟାକ ପରେ କୁସୁମ କୁଆଡ଼ୁ ଅଣ୍ଟିଏ ମୁଢ଼ି କିଣିଆଣି ପହଞ୍ଚିଲା । ମୁଢ଼ି ନେବାପାଇଁ ତା ଚାରିପାଖେ ଆସି ସମସ୍ତେ ରୁଣ୍ଡ ହୋଇଗଲେ । 'ମୋତେ ମୋତେ' କହି ତାକୁ ବାଉଳା ବାଉଳା କରି ପକାଇଲେ । ସେ ସମସ୍ତଙ୍କୁ ମୁଠାଏ ମୁଠାଏ ଦେଇ ଦନେଇ ବୁଢ଼ା ପାଖକୁ ଆସିଲା, ତା କାନିରେ ମୁଠାଏ ମଝା ଅଜାଡ଼ି ଦେଲା । ମୁଢ଼ି ନେଇ ସମସ୍ତେ ଖୁସିରେ ଖାଉଥିଲାବେଳେ କୁସୁମ କିଛି ଦୂରରେ ଗୋଟାଏ ଗଛ ମୂଳରେ ବସି ନିର୍ବିକାର ଚିତ୍ତରେ ଦେଖୁଥାଏ । ଶଉରୀ ବେଲ ଉଣ୍ଡି ମୁଢ଼ି ଚୋବାଇ ଚୋବାଇ ତା ପାଖରେ ଯାଇ ବସିଲା । କହିଲା, "ତୁ ଏ ଚଉମାଠାକୁ ସବୁ କଥା ଦେଉଛୁ କାହିଁକି ? ସେ କହୁଥିଲା, ତୁ ଚୋରଣୀ, ତା ଠିଣରୁ ଗୁଲୁଗୁଲା ଚୋରି କରି ଖାଇଛୁ ।"

ଏହା ଶୁଣି କୁସୁମ ଟିକିଏ ହସିଦେଲା । କିଛି ଉତ୍ତର ନ ଦେବାରୁ ବେଶି କଥା କହିବାକୁ ଶଉରୀର ସାହସ ହେଲା ନାହିଁ । ତାର ଡର ହେଲା, କାଳେ କୁସୁମ ଚିଡ଼ିଗଲେ ତା ମୁଢ଼ିତକ ଛଡ଼ାଇ ନେଇ ବଞ୍ଚିଦେବ । ଯେତିକି ଭଲ ସେତିକି ଖରାପ ସେ—ବଡ଼ ରାଗୀ । ଆଉ କିଛି କହିବାର ସୁବିଧା ନ ପାଇ ଶଉରୀ ବାଆଁରେଇ ହୋଇ ସେଠାରୁ ଚାଲି ଆସିଲା ।

× × × ×

ରତନା ପୁଅକୁ କାଲିଠାରୁ ଜ୍ୱର ଜାର କୁସୁମ କୁଆଡ଼େ ଯାଇଛି ଯେ ତାର ଦେଖା ମିଳୁ ନାହିଁ । ସେ ଥିଲେ ବା ପିଲାଟାର ଯତ୍ନ ନିଅନ୍ତା, ତାକୁ ଔଷଧପାଣି ଆଣି ଖାଇବାକୁ ଦିଅନ୍ତା ।

ଗୋଟାଏ ବଡ଼ ମହାଜନ ପୁଅର ବାହାଘର । ହଜାର ହଜାର ମାଗନ୍ତାଙ୍କୁ ସେ ଖାଇବାକୁ ଦେବ—କେତେ ପୁରୀ ଲୁଚି, ଜଳନ୍ତ ମିଠେଇ । ଘଣ୍ଟାକ ଆଗରୁ ସମସ୍ତେ ଯାଇଛନ୍ତି; ଯାଇନାହିଁ ଏକା ରତନୀ । ଏପରି ଜରୁଆ ପୁଅକୁ ଛାଡ଼ି ସେ ଯିବ ବା କପରି ? ଯାଇ ନ ଥିବାରୁ ମନ ଭିତରଟା ଖାଲି ଗୋଳେଇ ଘାଣ୍ଟି ହେଉଛି । କେତେ ଭଲ ଭଲ ଜିନିଷ ସମସ୍ତେ ଖାଇବେ ; ତା ପାଟିରୁ ଟିକିଏ ହେଲେ ଛଡ଼ଆ ମଲ ନାହିଁ । ଶଗଡ଼ୀ ଆସି ତା ଆଗରେ ମୁହଁ ହାତ ହଲେଇ କେତେ ଦେଖେଇ ଶିଖେଇ କହିବ ; ସେ ଚୁପ୍ ହୋଇ ସବୁ ଶୁଣିବ ସିନା ! ନା ସେ ନିଶ୍ଚୟ ଯିବ, ପୁଅ ପଡ଼ି ଥାଉ ।

ରତନୀ ଯିବ ବୋଲି ଉଠିଲା ; କିନ୍ତୁ ପୁଣି ମନରେ କଣ ଭାବି ପୁଅ ପାଖରେ ବସି ପଡ଼ିଲା । ପୁଅ ମୁଣ୍ଡକୁ କୋଳରେ ଆଣି ରଖି ଚିପି ଦେବାରେ ଲାଗିଲା ।

ରାତିରେ କୋଳାହଳ କରି ସମସ୍ତେ ଫେରିଲେ । ପେଟ ପୂରାଇ ସ୍ବର୍ଗର ଅମୃତ ଖାଇଥିବାରୁ ସମସ୍ତଙ୍କ ମୁହଁରେ ଆନନ୍ଦ ଖେଳି ଯାଉଛି । ଯେ ଯାହା ଜାଗା ବାଛିନେଇ ଶୋଇ ପଡ଼ିଲେ । କିଏ ବସି ଖଣ୍ଡିଆ ବିଡ଼ି ଟାଣିଲା ; କିଏ ପୁରୀର, କିଏ ମିଠାଇର ରୂପ ଓ ଗୁଣ ବର୍ଣ୍ଣନା କରିବାରେ ମଧ୍ୟ ଲାଗିଗଲେ ।

ରତନୀ ମୁହଁଟି ମାଡ଼ି ଦେଇ ଚୁପ୍ ହୋଇ ପୁଅ ପାଖରେ ଶୋଇ ପଡ଼ିଥାଏ । ସବୁ ଶୁଣୁଥାଏ, ପଦେ କିଛି କହୁ ନ ଥାଏ । ମନେ ମନେ ଭାବୁଥାଏ, ଏ ନିଆଁ ଲଗା ଟୋକାଟା ଯଦି ନ ଥାନ୍ତା, ତେବେ ସେ ତ ଆଜି ଯାଇ ମନବୋଧ କରି ପେଟେ ଖାଇଥାନ୍ତା । ଏଇଟା ନ ମରି ରହିଛି କାହିଁକି ?

ଏତିକିବେଳେ ଶଗଡ଼ୀ ଆସି ତାକୁ ଉଠାଇଲା । ରତନୀ ଚଡ଼-ମିଡ଼ ହୋଇ ଉଠି ବସିଲାକ୍ଷଣି ଶଗଡ଼ୀ ନିଜ ଟିଣଟାକୁ ତା ହାତକୁ

ବଢ଼ାଇଦେଲା । ସେଥିରେ କେତେ ଖଣ୍ଡିଆ ପୁରୀ, ଭଙ୍ଗା ମିଠେଇ ପଡ଼ି ରହିଛି । ଶଙ୍କରୀ କହିଲା, "ତୁ ତ ଗଲୁ ନାହିଁ ; ତେଣୁ ମୁଁ ତୋ ପାଇଁ ଏତକ ଆଣିଛି । ତୁ ଟିକିଏ ଖାଅ, ପୁଅ ପାଇଁ ବି କାଲିକି କିଛି ରଖି ଦେଇଥିବୁ ।"

ରତନୀ ମନଖୁସିରେ ସେଇକ୍ଷଣି ତାକୁ ଖାଇବାରେ ଲାଗିଗଲା ।

× × × ×

ଗୃହଦିନ ପରେ କୁସୁମ ଆଜ ପୁଣି ଫେରି ଆସିଛି । କୁଆଡ଼ୁ ଗାଁର ପରିଆ ଭାଇ ଆଜ ତା ଭାରିଯା ପଦ୍ମାକୁ ଧରି ଆଣିଛି । ଏ ଦୁହିଁଙ୍କୁ ଦେଖି ତାର ଗାଁ କଥା, ପିଲାଦିନ କଥା କେତେ ମନରେ ଉଙ୍କି ମାରୁଛି । ଗୃହଦିନ କାଳ ଅନୁପସ୍ଥିତରେ ସମସ୍ତଙ୍କର କିଛି କିଛି ଗୁହାରି କରିବାର ଅଛି; କିନ୍ତୁ ଆଜିର ତାର ଭାବଭଙ୍ଗୀ ଦେଖି କେହି ସାହସ କରି ତା ପାଖକୁ ଯାଇପାରୁ ନାହିଁ କି କିଛି କହିପାରୁ ନାହିଁ ।

ଲେଖାଯୋଖାରେ ପରିଆ କୁସୁମର ଭାଇ । ଭୋକ ଉପାସରେ ପଡ଼ି ପଡ଼ି ଶେଷକୁ ଗାଁ ଗଣ୍ଡା ଛାଡ଼ିବାକୁ ବାଧ୍ୟ ହୋଇଛି । ପଦ୍ମାକୁ ସାଙ୍ଗରେ ନେଇ ସେ କେତେଆଡ଼େ ବୁଲି ମଗାମଗି କରିଛି । କେତେ ବକଟ ଛତରରେ ବି ଖାଇଛି । ତଥାପି କରମ ପୂରି ପଡ଼ିଲା ନାହିଁ । ଶେଷକୁ ମାଗିବା ପାଇଁ କଟକ ସହରକୁ ଦୁହେଁଯାକ ଆସିଥିଲେ । କୁସୁମ ଆଣି ତାଙ୍କୁ ଏଠାରେ ଆଶ୍ରା ଦେଇଛି । କୁସୁମ ନିଜ କଥା ଏ ପର୍ଯ୍ୟନ୍ତ ଭୁଲି ଯାଇଥିଲା ; ତା ବୋଉ କପଟ ମରିଗଲା, ବାପା ତାକୁ ଛାଡ଼ି ଦିନେ ରାତିରେ କପଟ କୁଆଡ଼େ ପଳାଇଗଲା, ଯାତ୍ରା ବାଲୀସାଟିକୁ ନେଇ ପଳାଇଛି ବୋଲି ସମସ୍ତେ କପଟ ଛି ଛି କଲେ, ସେ କପଟ ଭୋକ ଉପାସରେ ଛଟପଟ ହେଲା—ଏସବୁ କଥା ଗୋଟି ଗୋଟି ହୋଇ ତା ମନରେ ପଡ଼ିଗଲା । ସେଦିନ ଗୁମାସ୍ତା ବାବୁ

ତାକୁ କଟେଶ୍ୱ ଘରକୁ ଡାକି ନେଲେ। ସବୁ ଦିନ ଘରେ ରଖିବେ, ଲୁଗାପଟା ଅଳଙ୍କାର ଦେବେ ବୋଲି ମଧ୍ୟ କହିଲେ ; କିନ୍ତୁ ମାସକ ପରେ ବାଡ଼େଇ ବାହାର କରି ଦେଲେ ; ଆଜ କେହି ତାକୁ ଘରେ ପୂରାଇଲେ ନାହିଁ। ଶେଷକୁ ସେ କଟକ ପଳାଇ ଆସିଲା ; ତା ବାପା ମାଆ ଗଲେ କୁଆଡ଼େ ? ଗାଁ ରହିଲା କେଉଁଠି ?

ପରିଆ ଛଡ଼ାଗ୍ସ ଖାଇବାକୁ ନ ପାଇ ଏକାବେଳକେ ଅକର୍ମଣ୍ୟ ହୋଇ ଯାଇଛି। ବସିବା ଜାଗାରୁ ସେ ଉଠିପାରେ ନାହିଁ। ପଦ୍ମା ତାକୁ ଏ ପର୍ଯ୍ୟନ୍ତ ବହୁତ କଷ୍ଟରେ ଚଳାଇ ଆଣିଛି। ସେ ନୂଆ ହୋଇ ଘରୁ ବାହାରିଛି, କପର ମାଗିବାକୁ ହୁଏ ଜମା ଜାଣେ ନାହିଁ, ଯାହା ପାଖରେ ହାତ ପତାଏ, ସେ ଦୂର୍ ଦୂର୍ ମାର ମାର କରେ ; ବରୁର ପଦ୍ମା ମୁହିଁ ତଳକୁ ପୋତ ଫେରି ଆସେ। ଶୂନ୍ୟ ହାତରେ ଆସି ଥିବାରୁ ଏଣେ ପରିଆଠାରୁ ଗାଲି ବି ଶୁଣେ।

କୁସୁମକୁ ପାଇ ତାର ଟିକିଏ ସାହସ ହୋଇଛି। କୁସୁମ ତାକୁ ଏଇ କେତେ ଦିନ ଭିତରେ ବହୁତ ସାହାଯ୍ୟ କରିଲାଣି। ଗୁଲୁଗୁଲା, ମିଠାଇ, ମୁଢ଼ି, ଅଇଣ୍ଠା ଭାତ ଡାଲି କେତେଥର ଆଣି ଦେଲାଣି। କିଣି ଖାଇବା ପାଇଁ କେତେବେଳେ କେମିତି ପଇସା ମଧ୍ୟ ଦିଏ।

ପଦ୍ମା ମନେ ମନେ ଭାବେ, କୁସୁମ ପିଲାଟାଏ, ସେ ଏତେ ପାଉଛି କୁଆଡ଼ୁ ? ଆଜ ମୁଁ ବାର ଦୁଆର ବୁଲିଲେ ବି ଅଧଲାଟାଏ ପାଉ ନାହିଁ।

କ୍ରମେ ତାର ସନ୍ଦେହ ବଢ଼ିବାରେ ଲାଗିଲା। ସେ ଆଉ ସମ୍ଭାଳି ପାରି ଦିନେ ଯାଇ କୁସୁମ ହାତ ଧରି ପକାଇ କହିଲା, "କୁସୁ, ଆଜି ମୁଁ ତୋ ସାଙ୍ଗରେ ଯିବି। ମୁଁ ଯାହାକୁ ମାଗେ ସିଏ ମୁହିଁ ମୋଡ଼ିଦିଏ। ମୁଁ ଅଧଲାଟିଏ କି ପାହୁଲାଟିଏ ବି ପାଉ ନାହିଁ। ଆଉ ତୁ ଏତେ ଜିନିଷ

ପାଉଛୁ କୁଆଡ଼ୁ ? ତୁ କାହା ପାଖକୁ ଯାଉ, କେମିତ ମାଗୁ—ମୁଁ ତୋ ସାଙ୍ଗରେ ଯାଇ ଶିଖିବ ।"

କୁସୁମ ଟିକିଏ ମୃଦୁଳ ହସ ହସି କହିଲା, "ଛି, ତୁ ବାହା ହେଉଛୁ ପରା ! ପରଅ ଭାଇ ଅଛି ଯେ ।"

ବାହା ସାଙ୍ଗରେ ଏ ଭିକମଗାର ଯେ କି ସମ୍ପର୍କ—ପଦ୍ମା ବୁଝିପାରିଲା ନାହିଁ । ପରଅ ପାଇଁ ତ ତାର ଭିକମଗା, ସେ ଅଛି ବୋଲି ତ ପଦ୍ମା ଭିକ ମାଗୁଛି, ସେ ନ ଥିଲେ ପଦ୍ମା ଖାଇଲେ କେତେ ନ ଖାଇଲେ କେତେ ?

କୁସୁମ ଯେ କାହିଁକି ତାକୁ ମନାକଲା, ସେ କିଛି ଜାଣିପାରିଲା ନାହିଁ । କୁସୁମ ଉପରେ ତାର ହିଂସା ହେଲା ଯେତିକି, ରାଗ ବି ହେଲା ସେତିକି । ସେ କରମ ଆଦର ପରଅଠାରୁ ଗାଳିମନ୍ଦ ଶୁଣି ପଡ଼ି ରହିଲା ।

× × × ×

ଦି ଦିନ ହେଲା ମେଘୁଆ ପାଗ କରିଛି । କୁସୁମ କେବେ ଥୟ ହୋଇ ବସି ରହେ ନାହିଁ, କିନ୍ତୁ କେଜାଣି କାହିଁକି ସେ ଏ ଦୁଇ ଦିନ କୁଆଡ଼େ ଯାଇ ନାହିଁ । ଅନ୍ୟମାନେ ଅଖ ପାଖରୁ ମଗାମଗି କରି ନିଜ ନିଜ ଗୁଜୁରାଣ ମେଣ୍ଟାଇ ଦେଉଛନ୍ତି ; କିନ୍ତୁ ଉପାସ ପଡ଼ି ରହିଛନ୍ତି, ପରଅ ଆଉ ପଦ୍ମା । ପଦ୍ମା ବିଚାରି କିଛି କୁଆଡ଼ୁ ଯୋଗାଡ଼ କରି ଆଣିପାରୁ ନାହିଁ । ଭୋକରେ ପେଟ ଜଳୁଛି, ସେଥିରେ ପୁଣି ପରଅର ଗାଳିମନ୍ଦ ଆଉ ଗୋଇଠା ମାଡ଼ । ସେ କରିବ କଣ ? ଖଣ୍ଡେ ଦୂରରେ ଚୁପ୍ ହୋଇ ବସି କାନ୍ଦୁଛି ।

ସନ୍ଧ୍ୟା ହେଲା । କୁସୁମ ଚୁପ୍ ହୋଇ ଗଛ ମୂଳେ ଶୋଇ ରହିଥାଏ । ରତନା ପୁଅ ଆସି ତାକୁ ଉଠାଇଲା । ତା ହାତରେ ଗୋଟାଏ ଦୋଅଣୀ ଗୁଞ୍ଜିଦେଇ କହିଲା, "ଅପା, ନେଇ, ସେ ଯେ ଗୁଲ୍‌ଗୁଲା

ଦୋକାନ ଦୁଆର, ସେଇଠି ସେ ଯେ ବାବୁ ଠିଆ ହୋଇଛନ୍ତି, ସେ ମୋତେ ଏ.ପଇସା ଦେଲେ । କହିଲେ, ଏଟା ଅପାକୁ ଦେବୁ । ତାଙ୍କୁ କହିବୁ ଅଜା ରାତିରେ ଆସିବ । ଅଜ ପଇସା ଦେବ ।"

କୁସୁମ ମୁହଁ ଟେକି ଚାହିଁଲା । ବହୁତ ଦୂର—ସେଥିରେ ପୁଣି ମୁହଁ ଅନ୍ଧାର । ଝାପ୍‌ସାରେ ତାଙ୍କୁ କିଛି ଦେଖାଗଲା ନାହିଁ । ସେ ଭାବିଲା, ଟୋକାଟା ଭୁଲ ବୁଝିଛି, ଗୁଲୁଗୁଲା ଦୋକାନୀ ତ ମୋତେ ମୋଟେ ଚାହେଁ ନାହିଁ । ସେ ପାନଦୋକାନୀ ହୋଇଥିବ । ଦୁଇଦିନ ହେଲା ଯାଇ ନାହିଁ, ସେଇଯୋଗେ ସେ ବୋଧହୁଏ ପଇସା ପଠାଇ ଦେଇଛି ।

ଏଇ ସମୟରେ ବସି ଗୁଲୁଗୁଲା ବିକି ଗୋଟାଏ ଟୋକା ସେବାଟେ ଝୁଣୁଣି ଝୁଣୁଣୁ କରି ଯାଉଥିଲା, କୁସୁମ ଦୁଇ ଅଣାରେ ଗୁଲୁଗୁଲା କିଣିଲା । ଭଉଣୀ ପୁଅକୁ ଗୋଟାଏ ଦେଲା, ପଦ୍ମା ପାଖକୁ ପୁଞ୍ଜାଏ ପଠାଇ ଦେଲା, ଆଉ ଗୋଟାଏ ସେ ମନ ଖୁସିରେ କାମୁଡ଼ି ଖାଇଲା । ଏତିକିବେଳେ ଭୁଲା କୁତଠା ଲାଙ୍ଗୁଡ଼ ହଲାଇ ତା ମୁହଁକୁ ଚାହିଁ ଠିଆ ହୋଇ ରହିଲା । କୁସୁମ ବାକୀ ଗୁଲୁଗୁଲା ତକ ତା ପାଖକୁ ଫୋପାଡ଼ି ଦେଇ ପାନ ଦୋକାନ ଆଡ଼କୁ ଚାହିଁ ବସି ରହିଲା ।

× × × ×

କୁସୁମ ରାତି ପାହାନ୍ତାକୁ ପାନ ଦୋକାନୀ ପାଖରୁ ଫେରିଆସି ସେଇ ମାତ୍ର ଶୋଇଛି, ତାକୁ ଭଲ ହୋଇ ନିଦ ହୋଇ ନାହିଁ, ଜଣେ ଲୋକର ଗୋଇଠା ମାଡ଼ରେ ଚମକି ପଡ଼ି ଉଠି ବସିଲା । ସେ ଚାହିଁ ଦେଖିଲା, ଆଗରେ ଜଣେ ଏ.ଆର୍.ପି. ବାବୁ । କେତେ ଏ. ଆର୍. ପି. ବାବୁ ତାର ଜଣାଶୁଣା, ମାତ୍ର ଏ ତ ଏକାବେଳକେ ନୂଆ ପରି ଦେଖା ଯାଉଛି ।

ଏ. ଆର. ପି. ବାବୁ ଗରଜି ଉଠି କହିଲେ "ବଜାତ, ଦେ ମୋ ଦଅଣା ପଇସା । କାଲି ରାତିଯାକ ମଶା ବଣରେ ବସି ବସି ମୋ ଦେହ ଫୁଲିଗଲାଣି, ପଇସାକୁ ପଇସା ରହି ଯିବାର ନାଁ ନାହିଁ ।"

ପାଟି ଶୁଣି କୁସୁମ ଚମକି ଉଠିଲା । ସେ ଦୁଇ ହାତରେ ଆଖିକୁ ମଳି ବାବୁଙ୍କ ମୁହଁକୁ ନିରେଖି ଚାହିଁ ଆକାଶରୁ ପଡ଼ିଲା ପରି କହିଉଠିଲା, "ବାପା !"

ଏ. ଅର. ପି. ବାବୁଙ୍କର ବୋଧହୁଏ ସେତେବେଳେ ଚେତା ନ ଥିଲା ।

ଦାନେଇ ବୁଢ଼ା କେତେ ଆଗରୁ ଉଠି ମନକୁ ମନ ଗୁଣୁ ଗୁଣୁ ହେଉଥିଲା; ତା ପାଟିରୁ ଶୁଣାଗଲା; "ଦୁନିଆ ଚନ୍ଦା, ଦୁନିଆ ।"

---

## ରାୟ ସାହେବଙ୍କ ଅନ୍ନଛତ୍ର

ଯେ କୌଣସି ଗୋଟିଏ ଛୋଟ ସହର, ତା ମଝିରେ କିଛି ଠିଆ ହୋଇଛି ଗୋଟାଏ ମସ୍ତବଡ଼ ଦୋମହଲା କୋଠା । ଉଚ୍ଚତାରେ, ଗଢ଼ଣରେ, ବିଭବରେ ଯେପରି ସହରର ଦରିଦ୍ର ଭଙ୍ଗା ଘରଗୁଡ଼ାକୁ ଉପହାସ କରୁଛି । ସହରର ଲୋକେ ରାଜନଅର ନ ଦେଖିଥିଲେ ସୁଦ୍ଧା ଏହା ଯେ ରାଜନଅରଠାରୁ କୌଣସି ମତେ ଊଣା ନୁହେ—ଏ ବିଶ୍ୱାସ ମନରେ ପୋଷିଥାନ୍ତି । ଘର ଆଗରେ ରାଜପଥ ପର୍ଯ୍ୟନ୍ତ ଗୋଟିଏ ଚିକ୍କଣ ସଫା ସୁନ୍ଦର ପକ୍କା ରାସ୍ତା । ରାସ୍ତାର ଦୁଇ ପାଖରେ ଲମ୍ବା ଚଉଡ଼ା ହତା, ସେଥିରେ ନାନା ପ୍ରକାର ବିଦେଶୀ ଘାସ ଓ ଫୁଲ ଗଛ ସୁନ୍ଦରଭାବରେ ସଜାହୋଇ ଲଗାଯାଇଛି । ବିଭିନ୍ନ ରଙ୍ଗର ଫୁଲ ଫୁଟି ଲୁଲୁଭୁଅଷୁଣୀ ମୁରୁଜ ପକାଇ ଚିତ୍ର ଲେଖିଲା ଭଳି ଦେଖାଯାଉଛି । ଅଧିକାଂଶ ଗଛ ଇଂରାଜୀ ଭ ଅକ୍ଷରରେ ଲଗା-ଯାଇଥିବାରୁ ଫୁଲଗୁଡ଼ିକ ଯେଉଁପରି ଫୁଟି ଦର୍ଶକ ଆଖିକୁ ଆକୃଷ୍ଟ କରି ନେଉଛି ।

ଏ ଅଭିଜାତ୍ୟ ଭରା କୋଠା, ଯୌବନ ଫୁଲବଗିଚା ଯେ କୌଣସି ସାଧାରଣ ଲୋକର ହୋଇ ନ ପାରେ । ଏହାର ମାଲିକ

ମିଷ୍ଟର ଖୁବ୍ ଧନୀ, ଅଧିକନ୍ତୁ ଅଲୋକପ୍ରାପ୍ତ ହେବାର କଥା । ରାୟ ସାହେବ ଉଚ୍ଚ ଶିକ୍ଷିତ ନ ହେଲେ ମଧ୍ୟ ପାଶ୍ଚାତ୍ୟ ଦୀକ୍ଷାରେ ଦୀକ୍ଷିତ ଓ କୃତବିଦ୍ୟ ପୁରୁଷ । ତାଙ୍କ ଧନସମ୍ପତ୍ତି ପିତୃ ପିତାମହଙ୍କ ଅର୍ଜିତ ସତ; କିନ୍ତୁ ସେ ତାଙ୍କ ନିଜ ବୁଦ୍ଧି ଓ ଜ୍ଞାନ ବଳରେ ଯଶ ଓ ଖ୍ୟାତିର ତୁଙ୍ଗ ଶିଖରରେ ଉଠିପାରିଛନ୍ତି—ଯାହା କି ତାଙ୍କ ପୂର୍ବ ପୁରୁଷ କଳ୍ପନା କରି ନ ଥିବେ । ତାଙ୍କ କାର୍ଯ୍ୟକଳାପରେ ସନ୍ତୁଷ୍ଟ ହୋଇ ସରକାର ବାହାଦୁର ତାଙ୍କୁ ଯଥେଷ୍ଟ ସମ୍ମାନ ଦେଖାଇଛନ୍ତି, ସନନ୍ଦ ଦେଇଛନ୍ତି, ରାୟ ସାହେବ ଉପାଧିରେ ଭୂଷିତ କରିଛନ୍ତି । ସେ ବର୍ତ୍ତମାନ ନିଜ ନାମରେ ଅଦୌ ପରିଚିତ ନୁହନ୍ତି କହିଲେ ଚଳେ । ରାୟ ସାହେବ ନାମହିଁ ତାଙ୍କୁ ସାଧାରଣରେ ପରିଚିତ କରାଇଥାଏ । ସହର ମ୍ୟୁନିସିପାଲିଟିର ସେ ଚେୟାରମେନ, ବ୍ୟବସ୍ଥାସଭାର ସଭ୍ୟ, ଅଦାଲତର ଜୁରର, ସବ୍‌ଡିଭିଜନ ହାକିମଙ୍କ ହାତବାରିସ ଓ ଯେ କୌଣସି ସଭା ସମିତି ହେଲେ ତାର ସଭାପତି । ସହରକୁ ଜିଲା ସାହେବ ଆସିଲେ ତାଙ୍କ ଗୃହ ଭେଜଠାରୁ ଆରମ୍ଭ କରି ଲାଟ ସାହେବ ଆସିଲେ ତାଙ୍କ ସହିତ କରମର୍ଦ୍ଦନ ପର୍ଯ୍ୟନ୍ତ ସବୁଥିରେ ପ୍ରଥମେହିଁ ରାୟ ସାହେବଙ୍କୁ ନିମନ୍ତ୍ରଣ କରାଯାଇଥାଏ ।

ରାୟ ସାହେବ ଯେପରି ଧନୀ, ସେହିପରି ଦାନୀ ମଧ୍ୟ । ସହରର ଡାକ୍ତରଖାନା ପାଇଁ ହଜାର ହଜାର ଟଙ୍କା ସେ ଅଯାଚିତ ଭାବରେ ଦେଇଅଛନ୍ତି; ଯୁଦ୍ଧ ଗୃହା ପାଇଁ ତାଙ୍କ ହାତ ସବୁବେଳେ ଖୋଲା । ସରକାରୀ ନିର୍ଦ୍ଦେଶମତେ ସହରରେ ପଶୁ ପ୍ରଦର୍ଶନୀ ହେବ, ରେଡ଼୍‌କ୍ରସ ସପ୍ତାହ ଲାଗି ନୃତ୍ୟଗୀତ ଉତ୍ସବ ହେବ, ବଡ଼ଲାଟଙ୍କ ଫଣ୍ଡ ପାଳିବାପାଇଁ ଟଙ୍କା ଦରକାର ହେବ—ଏ ସବୁ ଖର୍ଚ୍ଚ ତୁଲାଇବାକୁ ଦୁନିଆରେ ଏକା ରାୟ ସାହେବ । ମଫସଲରେ ବିସ୍ତୀର୍ଣ୍ଣ ଜମିଦାରୀ ଅଛି; ପ୍ରଜା ଖାତକଙ୍କ ଠାରୁ ଖଜଣା, ଟିକସ, ଗୃହା, ଭେଟି, ମାଗଣ

ପ୍ରତ୍ୟହରେ ୧ ଥୋଷ୍ଟ ଟଙ୍କା ଅଦାୟ ହେଉଛି—ଖର୍ଚ୍ଚର ଅକୁଳାନ ହେବ ବା କାହିଁକି ?

ରାୟ ସାହେବ ତାଙ୍କ କର୍ମମୟ ଜୀବନରେ ପ୍ରଥମେ ପ୍ରବେଶ କରିଥିଲେ ଇଉନିୟନର ପ୍ରେସିଡେଣ୍ଟ ରୂପେ । ଗତ ଦଶବର୍ଷ ମଧ୍ୟରେ ତାଙ୍କ କାର୍ଯ୍ୟକୁଶଳତା, ଦକ୍ଷତା, ବୁଦ୍ଧିବଳ ଯୋଗେ ସେ ଏତେ ଉଚ୍ଚକୁ ଉନ୍ନୀତ ହୋଇଅଛନ୍ତି । ତଥାପି ଏତିକରେ ସେ ସନ୍ତୁଷ୍ଟ ହେବା ଲୋକ ନୁହନ୍ତି । ରାୟ ସାହେବ ଉପାଧିଟା ତ ସର୍ବ ନିମ୍ନ ଉପାଧି । ସେ ଯଦି ଦେବାନ ବାହାଦୂର କିମ୍ବା ନିତାନ୍ତ ରାୟ ବାହାଦୂର ହୋଇ ନ ପାରିଲେ ତେବେ ଏତେ ଅର୍ଥବ୍ୟୟ ବୃଥା ସିନା !

୧୯୪୩ ମସିହା—ବର୍ଷ ପୂରିବାକୁ ଆଉ ଦୁଇ ତିନି ମାସ ବାକି ଅଛି । କ୍ରମେ ଦେଶର ଅନ୍ଧକନ୍ଦି ଗାଁ ଟୋଲ ଗୁଡ଼ିଆଡ଼ୁ ଧାନ ଚାଉଳ ଲୁଚି ଯିବାକୁ ଲାଗିଲା । ଗୁଡ଼ୁ ଗୁଡ଼ୁ ସବୁଆଡ଼େ ସମାନ ଦଶା ଦେଖାଗଲା—ଧାନ ମିଳୁ ନାହିଁ, ଚାଉଳ ଦେଖିବାକୁ ସପନ । ଲୋକେ ଖାଇବେ କଅଣ ? ବଞ୍ଚିବେ କିପରି ?

ରାୟ ସାହେବଙ୍କ ଗୁମାସ୍ତାମାନଙ୍କ ପାଖକୁ ପରୱାନା ଗଲା, ଖମାରରୁ ଗୋଟିଏ ସୁଦ୍ଧା ଧାନ ଖରଚ କରିବ ନାହିଁ ।

ଜମିଦାରୀର ମୌଜାମାନଙ୍କରେ ଜମିଦାରଙ୍କର ଗୋଟିଏ ଗୋଟିଏ ଖମାର ଥାଏ; ସେଠାରେ ବହୁତ ଧାନ ମହଯୁଦ ରହିଥାଏ । ପ୍ରଜାମାନେ ବର୍ଷର ଶେଷଆଡ଼କୁ ତାହା ନିଜେ ଖାଇବା ଲାଗି, ଗୁଷ ଚାଷ କାମରେ ମୂଲ୍ୟ ଦେବା ଲାଗି କରଜ ନିଅନ୍ତି । ଦୁଇ ତିନିମାସ ପରେ ଫସଲ ଅମଳ ହେଲେ ଗଉଣିକ ଜାଗାରେ ଦେଢ଼ ଗୌଣି ଦେଇ ପରିଶୋଧ କରିଦେଇ ଯାଆନ୍ତି । ପ୍ରଥମେ ଦୁଇ ତିନି ଭରଣରେ ଏହା ଆରମ୍ଭ ହୋଇଥିଲା । ସେହି ପ୍ରଜାଙ୍କ ଧାନରେ ବଢ଼ି ବଢ଼ି ବର୍ତ୍ତମାନ କୌଣସି କୌଣସି ଖମାରରେ ଶହ ଶହ ଭରଣ ଧାନ

ଜମା ହୋଇଛି । ଅଷାଢ଼ ମାସର ନଈପରି ତାହା ପ୍ରତିବର୍ଷ କେବଳ ଫୁଲିବାରେ ହିଁ ଲାଗିଛି ।

ଏହି ଖମାର ଧାନ ପ୍ରଜାମାନଙ୍କ ଜମିର ଫସଲ, ପ୍ରଜାଙ୍କ ଗ୍ରାମବାସୀ ପରିଶ୍ରମର ଫଳ; ଖମାର କେବଳ ତାର କୋଠଭଣ୍ଡାର ବୋଲି ସେମାନେ ଜାଣନ୍ତି । ମାତ୍ର ଯେତେବେଳେ ଶୁଣିଲେ ଯେ, ଜମିଦାରଙ୍କ ଆଦେଶ, ଏ ବର୍ଷ ତାଙ୍କୁ ଧାନ ଆଦୌ ଦିଆଯିବ ନାହିଁ, ସେତେବେଳେ ତାଙ୍କର ସେ ଭ୍ରମଧାରଣା ଦୂର ହେଲା । ସେତେବେଳେ ତାଙ୍କ ଆଖିକୁ ଗୁରୁ ଆଡ଼ ଅନ୍ଧାର ଦେଖାଗଲା । ତାଙ୍କର ଧାନ—ହେଉ ସେ ଧନ କ୍ଷେତରେ ଠେଲିଦେଇ କରି ନେଇ ସେଠାରେ ଜମାଇଦେଇ ଆସିଲେ; ଅଥଚ ଅଳ୍ପ ପିଲାପିଲିଙ୍କ ମୁହଁରେ ଚୋବା ଦେବାପାଇଁ ସେଥିରୁ ମୁଠାଏ ପାଇପାରିବେ ନାହିଁ !

ଲୋକେ ବିବ୍ରତ ହୋଇପଡ଼ିଲେ, ଆଖପାଖ ଗାଁ ଗଣ୍ଡା ଓ ସହରମାନ ବୁଲି ଧାନଚାଉଳ, ମାଣ୍ଡିଆ, କୋଳଥ ସଂଗ୍ରହ କରିବାରେ ଲାଗିଲେ । ସେଥିପାଇଁ ଅଳଙ୍କାରପତ୍ର, କଂସାବାସନ, ଗାଈଗୋରୁ ପ୍ରଭୃତି ଘରର ଆସବାବ ଗୋଟି ଗୋଟି ହୋଇ ସବୁ ବନ୍ଧା ବନ୍ଧା ପଡ଼ିଲା । ଶେଷକୁ ଜମି, ଘରଡିହ ମଧ୍ୟ ବାଦ୍ ଗଲା ନାହିଁ । ଏହା ସତ୍ତ୍ୱେ ଧାନଚାଉଳ ମିଳୁଛି କେଉଁଠି ? ତଳିଦାନେ ଯେ ପେଟକୁ ମଧ୍ୟ ପେଜ କି ତୋରାଣି ଦେବା କଷ୍ଟକର ।

ପେଟ ଦାଉ ସମ୍ଭାଳି ନ ପାରି କେତେକ ଖମାରରେ ଲୋକେ ଜବରଦସ୍ତି କଲେ; ଧାନ ଲୁଟ୍ କରିବାକୁ ବସିଲେ । ଫଳରେ ପୁଲିସ ସେମାନଙ୍କୁ ଗିରଫ କରି ଜେଲ ଦେଲେ, ମକଦ୍ଦମା ଚାଲିଲା । କେତେକ ସ୍ଥାନରେ ଲୋକଙ୍କୁ ଘଉଡ଼ାଇବା ପାଇଁ ଲାଠି ଚାଲିଲା, ଲୋକଙ୍କ ମୁଣ୍ଡ ପିଠି ଫାଟିଲା । କେଉଁ କେଉଁ ମୌଜାରେ ଲୋକଙ୍କୁ ଜବତ କରିବା ଲାଗି ପୁଲିସ ଗାଁ ଘେରାଉ କଲେ । ଘରେ ଘରେ

ସ୍ତ୍ରୀ ପିଲଙ୍କ ଉପରେ ଅତ୍ୟାଚାର ହେଲା । ଲୋକେ ବାହୁ ବାହୁ ରଡ ଛାଡ଼ି ନିଜ ଦୁଷ୍କର୍ମ ପାଇଁ କ୍ଷମା ମାଗିଲେ ।

ଆଉ କେତେକ ମୌଜାର ଲୋକେ ଜମିଦାରଙ୍କ ପାଖକୁ ଧାଇଁଲେ । ସେମାନେ ଜାଣନ୍ତି, ଜମିଦାର ଦେବ ପ୍ରକୃତିର ଲୋକ; ଯଥେଷ୍ଟ ଦାନ ଧ୍ୟାନ କରନ୍ତି, ହଜାର ହଜାର ଟଙ୍କା ସେ ପରଲାଗି ଦେଇ ଦେଇଛନ୍ତି ବୋଲି ଶୁଣାଯାଏ; ତେବେ ନିଜ ପ୍ରଜା, ନିଜ ପୁଅଙ୍କ ଗୁହାରି କଣ ଶୁଣିବେ ନାହିଁ ? ଘର ପିଚ୍ଛା ପନ୍ଦର ଗଉଣୀ ଲେଖାଏଁ ଧାନ ଦେଇଦେଲେହିଁ କାମ ଚଳିଯିବ—ସେ ନିଶ୍ଚୟ ଦେବେ ।

ମାତ୍ର ସେ ସମସ୍ତଙ୍କ ଆଶା ପୂରଣ ହେଲା ନାହିଁ । ଯେଉଁମାନଙ୍କର ବେଶି ଜମି ଥିଲା, ଯେଉଁମାନେ ଭରି ଭରି ସୁନା ଦେଇପାରିଲେ, କେବଳ ସେହିମାନେହିଁ ତା ପରିବର୍ତ୍ତିରେ କିଛି କିଛି ଧାନ ପାଇବାର ସୁବିଧା ହେଲା । ସେପରି ଜମି ବା ସୁନା କେତେଜଣଙ୍କର ଥାଏ ? ଫଳରେ ଅଧିକାଂଶ ହାତ ଗୋଡ଼ ଧରି ନେହୁରା ହୋଇ ହୋଇ ଶେଷକୁ ନିରାଶ ହେଲେ; ଆଖିରୁ ଲୁହ ଗଡ଼ାଇ ନିଜ ନିଜ ଘରକୁ ଫେରିଲେ ।

କ୍ରମେ ଦୁର୍ଭିକ୍ଷ ଧକ୍କାରେ ସମସ୍ତେ ବିଚଳିତ ହୋଇପଡ଼ିଲେ । ସରକାରୀ ଦପ୍ତର ହଲଚଲ ହୋଇଉଠିଲା । ଉପର ହାକିମଙ୍କ ନିର୍ଦ୍ଦେଶ ମତେ ସବ୍‌ଡିଭିଜନ ଅଫିସର ସହରରେ ଦାତବ୍ୟ ଅନ୍ନଛତ୍ର ଖୋଲିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇଲେ । ଗୋଟିଏ ଅନ୍ନଛତ୍ର କମିଟି ଗଢ଼ାଗଲା; କମିଟିର ସଭାପତି ହେଲେ ଖୋଦ୍ ଗ୍ରପ୍ସ ସାହେବ ।

ପ୍ରତିଦିନ ଦୁଇଶହ କାଙ୍ଗାଳଙ୍କୁ ବକଟେ ଲେଖାଏଁ ଖାଇବାକୁ ଦେବାର ବ୍ୟବସ୍ଥା କରାଗଲା । ଗ୍ରପ୍ସ ସାହେବ ଦେଖିଲେ, ଏ ସୁବର୍ଣ୍ଣ ସୁଯୋଗ ଛାଡ଼ିବାର ନୁହେ । ସବ୍‌ଡିଭିଜନ ଅଫିସର ମଧ୍ୟ

ପ୍ରକାରାନ୍ତରେ ତାର ଇଙ୍ଗିତ ଦେଇଛନ୍ତି । ରାୟ ସାହେବ ପାଞ୍ଚଶହ ଟଙ୍କା ଏହି ମହତ୍‌କାର୍ଯ୍ୟ ପାଇଁ ଦାନକଲେ, ସାଙ୍ଗେ ସାଙ୍ଗେ ଅନ୍ୟ ଦଶ ପନ୍ଦରଶ ହୋଇ ଟଙ୍କା ଅଦାୟ ହେଲା, କେତେକ ଟଙ୍କାର ପ୍ରତିଶ୍ରୁତି ମଧ୍ୟ ମିଳିଲା । ରାୟ ସାହେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ ତୁରନ୍ତ ଆରମ୍ଭ ହୋଇଗଲା ।

ଗାଁ ଗହଳରୁ ହଜାର ହଜାର ସ୍ତ୍ରୀ ପୁରୁଷ, ପିଲା ବୁଢ଼ା ଆସି ସହରରେ ରୁଣ୍ଡ ହେଲେଣି; ମଣିଷ ତ ନୁହନ୍ତି—ଗୋଟାଏ ଗୋଟାଏ ଜୀବନ୍ତ କଙ୍କାଳ ମାତ୍ର—ଯେପରି କୌଣସି ପ୍ରେତପୁରୀରୁ ଏ ଇନ୍ଦ୍ରଭୁବନକୁ ପଳାଇ ଆସିଛନ୍ତି । ଲଜ୍ଜା ଢାଙ୍କିବାକୁ ଅନେକଙ୍କ ଦେହରେ ଖଣ୍ଡେ ହେଲେ କନା ନାହିଁ । ବାଟ ଘାଟ ଗୁହାରିଆଡ଼ ସେମାନଙ୍କ ଦ୍ୱାରା ପୂର୍ଣ୍ଣ । ବାବୁ ଗଣ୍ଡାଏ ଦିଅ, ଦି ଦିନ ହେଲା ଖାଇ ନାହିଁ—ଏଇ କଥା କେତୁଟା ତାଙ୍କ ମନର ଯନ୍ତ୍ରଣା ଯେତିକି ଜଣାଇ ଦେଉଛି, ବାବୁମାନଙ୍କ ମନକୁ ସେତିକି ଦୃଢ଼ କରି ଦେଉଛି ।

ରାୟ ସାହେବଙ୍କ ପ୍ରକାଣ୍ଡ ହତା ଭିତରେ ଅନ୍ନଛତ୍ର ଖୋଲା ଯାଇଛି । ପ୍ରତିଦିନ ଦୁଇଶହ ଭିକାରୀଙ୍କୁ ଖାଇବାକୁ ଦେବାର କଥା । ସେଥିପାଇଁ ଅନ୍ନଛତ୍ର ଫଣ୍ଡରୁ ଦରମା ଦିଆଯାଇ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ସେମାନେ ରାୟ ସାହେବଙ୍କ ନିଜର ଲୋକ; ଉମେଦୁଆରୀ, ଅନୁସରଣିଆ । ଏତେ ବଡ଼ କାର୍ଯ୍ୟ ସମାଧା କରିବାକୁ ବିଶ୍ୱାସୀ ଆଉ ଭଲ ଲୋକ ନ ରହିଲେ କାମ ଚଳିବ କିପରି ?

ପ୍ରଥମେ ଦୁଇଶହ ଲୋକ ବାଛିବାର କଥା । ରାୟ ସାହେବଙ୍କ ନିର୍ଦ୍ଦେଶ, ଯେଉଁମାନେ ଟାଣୁଆ, ଯେଉଁମାନେ କାମଦାମ କରିପାରିବେ, କେବଳ ସେଇପରି ଲୋକଙ୍କ ପାଇଁ ଏ ଅନ୍ନଛତ୍ର । ସେମାନେ ଖାଇ ବଞ୍ଚି ରହିଲେ ଦେଶର ସିନା କାମରେ ଲାଗିବେ । ଯେଉଁମାନେ ବୁଢ଼ା ବୁଢ଼ୀ ହୋଇଗଲେଣି, ଯେଉଁମାନେ ବେମାରରେ ବା ଖାଇବାକୁ

ନ ପାଇ ଏକାବେଳକେ ଅକର୍ମଣ୍ୟ—ସେମାନଙ୍କ ପିଛା ଏ ଧନ ଖର୍ଚ୍ଚ କରିବା ଅର୍ଥ ପାଣିକୁ ଫିଙ୍ଗିଦେବା । ସେମାନେ ତ ଅନ୍ନ ନ ହେଲେ କାଲି ନିଶ୍ଚୟ ମରିବେ; ନିହାତ ଯଦି ବା କେହି ବଞ୍ଚିରହେ, ତେବେ ତାହାଦ୍ୱାରା ତ କୌଣସି କାମ କରିହେବ ନାହିଁ; ତାହେଲେ ସେମାନଙ୍କୁ ଖାଇବାକୁ ଦେଇ ଲାଭ କଣ ? ସେ ଟଙ୍କା ମଶାଣିରେ ପୋଡିବାହିଁ ସାର ।

ଏହି ମାତରେ ଦୁଇଶହ ଲୋକ ବଛା ହୋଇଗଲେ । ଖବର ପାଇ ସହରର ଯେତେ ଯେ ଯୁଆଡ଼େ ଭିକାରୀ ଥିଲେ, ସମସ୍ତେ ଆସି ଜମିଥିଲେ । ସମସ୍ତେ ମନେ ମନେ ଭାବିଥିଲେ, ଆଜ ବେଶି କେହି ଏ ଖବର ପାଇ ନାହାନ୍ତି—ମୁଁ ଆଗ ଗଲେ ମୋ ନାଁଟା ନିଶ୍ଚୟ ରହି-ଯିବ । ଏହି ଏକ ପ୍ରକାର ଭାବନା ନେଇ ସମସ୍ତେ ଆସିଥିଲେ ଓ ଫେରିଲେ ସମସ୍ତେ ନିରାଶ ହୋଇ । କେତେ ଅନୁନୟ ବିନୟ, କାକୁତି ମିନତି, ହାତଗୋଡ ଧରା, ମୁଣ୍ଡିଆ ମରା ସବୁ ବୃଥା ହୋଇଥିଲା । ବାଛି ବାଛି ଦୁଇଶହ ସ୍ତ୍ରୀ ପୁରୁଷଙ୍କୁ ଖଣ୍ଡେ ଖଣ୍ଡେ କାଗଜ ଦିଆଗଲା । ସେମାନେ ପ୍ରତିଦିନ ଗୃହଟାବେଳେ ଆସି ସେ କାଗଜ ଦେଖାଇଲେ ମୁଠାଏ ଖାଇବାକୁ ପାଇବେ । ଅଟ୍ଟରୁ ଆସିଲେ ବସି ରହିବେ, ପଛକୁ ପଡ଼ିଗଲେ ପଡ଼ି କାଠ ।

ଦୁଇଶହ ଲୋକଙ୍କ ପାଇଁ ଅନ୍ନଛତ୍ର ଖୋଲିଗଲା; ସେଥିପାଇଁ ଦଶଜଣ ଟଙ୍କିଆ କାରପରଦାର ନିଯୁକ୍ତ ହେଲେ । ଚାଉଳ, ମୁଗ, ବିରି, ଲୁଣର ଅଦ୍ଭୁତ ଖେଚେଡ଼ି ପ୍ରତ୍ୟହ ମୁଠାଏ ଲେଖାଏ ମିଳିଲା, ତା ସାଙ୍ଗକୁ କାରପରଦାରଙ୍କ ଠାରୁ ମିଳିଲା କେତେ ତାଚ୍ଛଲ୍ୟ ଗାଳି, ଉପହାସ, ଧକ୍କା; ସମୟ ସମୟରେ ଠେଙ୍ଗାଣି ମାଡ଼ ମଧ୍ୟ । ମାଗିଖିଆଙ୍କ ପ୍ରତି ତାର ମୂଲ୍ୟ ବା କଣ ?

ସୁରଟ୍ଟରରେ କେତେ ଦିନ ଅନ୍ନଛତ୍ର ଚାଲିଲା । ସହରର ହାକିମ ହୁକୁମା, ବଡ଼ ବଡ଼ ଲୋକ ଆସି ମଜଜ ଦେଖିଲେ, କଉତୁକ ଅନୁଭବ କଲେ, ରାଯ୍ଣ ସାହେବଙ୍କୁ ଧନ୍ୟ ଧନ୍ୟ କହିଲେ । ଖବରକାଗଜରେ ବଡ଼ ବଡ଼ ଅକ୍ଷରରେ ରାଯ୍ଣ ସାହେବଙ୍କ ବଦାନ୍ୟତା, ଦରିଦ୍ରଙ୍କ ଲାଗି ସ୍ୱାର୍ଥତ୍ୟାଗ, ଅନ୍ନଛତ୍ରର ଶ୍ରେଷ୍ଠ କାର୍ଯ୍ୟପଦ୍ଧତି ସମ୍ବନ୍ଧରେ ଲେଖାମାନ ବରାବର ପ୍ରକାଶିତ ହେବାକୁ ଲାଗିଲା । ବାହାରର ଇଂରାଜୀ କାଗଜରେ ଫଟୋ ଛପା ହେଲା । କାଙ୍ଗାଳମାନେ ଖାଇବାକୁ ପାଇ ଯେତେ କୃତାର୍ଥ ନ ହେଲେ, ରାଯ୍ଣ ସାହେବ ଖାଇବାକୁ ଦେଇ କୃତାର୍ଥ ହେଲେ; ତା ଠାରୁ ବେଶି ଗୌରବ ଅନୁଭବ କଲେ ସବ୍‌ଡିଭିଜନର ବଡ଼ ହାକିମ ।

କେତେ ଦିନ ପରେ ଠିକ୍ ହେଲା, କାଙ୍ଗାଳମାନେ ରାଯ୍ଣ ସାହେବଙ୍କ ହତାରେ ରହିବେ । ସେମାନଙ୍କର ରୋଗ ବଇରାଗ ହେଲେ ଔଷଧ ଦିଆଯିବ, ସେବା ଶୁଶ୍ରୂଷାର ବ୍ୟବସ୍ଥା ହେବ । ତାହାହିଁ ହେଲା, ସ୍ତ୍ରୀ ପୁରୁଷମାନେ ସେଠାରେ ଦିନଯାକ ପଡ଼ି ରହିଲେ । କାଙ୍ଗାଳମାନେ ରାଯ୍ଣ ସାହେବଙ୍କ ବଗିଚାରେ ତାଙ୍କୁ କାମରେ ଲଗାଇଲେ । ପୋଖରୀ ଖୋଳା ହେଲା, ମାଟି ହଣାଯାଇ ନୂଆ ନୂଆ ଫସଲ ଲାଗିଲେ । ବଗିଚା ଫଳ ଫୁଲରେ ହସିଉଠିଲା, ଅଧିକା ଖାଦ୍ୟ ଉତ୍ପନ୍ନ ନୀତି ଅନୁସରଣ କରୁଥିବାରୁ ହାକିମମାନେ ଅତ୍ୟନ୍ତ ଖୁସି ହୋଇଗଲେ ।

ହତା ମଧ୍ୟରେ ବହୁତ ଦିନ ପଡ଼ି ରହିବାକୁ ଅମଙ୍ଗ ହେଲା ଏକା ଦେଇ । ତାର ବୟସ ଅଳ୍ପ, ଦେହରେ ଯୋର ଅଛି, କାଙ୍ଗାଳଙ୍କ ଭିତରେ ଦେଖିବାକୁ ସେ ଟିକିଏ ଫର୍ଶା; ତେଣୁ ତାକୁ କାଗଜ ମିଳିଥିଲା । କିନ୍ତୁ ଗୋପାଳିଆ—ଗଉରୀର ସ୍ୱାମୀ ସେ ସୁଖରୁ ବଞ୍ଚିତ ହୋଇଥିଲା । ଗୋପାଳିଆ ବୁଢ଼ା ହୋଇଗଲଣି, ଦାନା ନ ପାଇ ଦେହ

ଥରୁ ଥରୁ, ବସିଲେ ଉଠିବାକୁ ବଳ ନାହିଁ, ପଦାର୍ଥେ ଗୁଲିବାର ଶକ୍ତି ନାହିଁ; ଯେ କୌଣସି ମୁହୂର୍ତ୍ତରେ ତା ଜୀବନର କ୍ଷୀଣ ବାଯୁଟି ଯେ ଉଡ଼ିଯିବ—ସେଥିରେ ସନ୍ଦେହ ନାହିଁ। ଏପରି ଅବସ୍ଥାରେ ସେ ବା କାଗଜ ପାଆନ୍ତା କପରି ?

ଗଜସ୍ତି ପ୍ରତିଦିନ ଘଣ୍ଟାକ ଆଗରୁ ଯାଇ ଜଗି ବସେ । ଯେତେ-ବେଳେ ଖାଇବାକୁ ଦିଆଯାଏ, ସେ ତାହା କାନିରେ ବାନ୍ଧି ବୁଢ଼ା ପାଖକୁ ଆଣେ । ସେଥିପାଇଁ ସେ କେତେଥର ଧକ୍କା, ଠେଙ୍ଗୁଣିମାଡ଼ ଖାଇସାରିଲଣି, ଥରେ ଦୁଇଥର ମଧ୍ୟ ତାକୁ ଖାଇବାକୁ ଦେବା ବନ୍ଦ କରି ଦିଆ ଯାଇଥିଲା । ତଥାପି ତା ଚୋରଣୀ ସ୍ୱଭାବ ସେ ଛାଡ଼ିଲା ନାହିଁ । ବହୁତ ନେହୁରାମନ୍ଦ ହୋଇ କାରପରଦାରଙ୍କ ଗୋଡ଼ ଧରି, କେତେବେଳେ କେମିତି ଗୋଟାଏ ମୃଦୁକହସ ହସିଦେଇ ସେ ଖେଚେଡ଼ିତକ ଆଣିବାକୁ ବାଟ ପାଇଥାଏ । ସେଇତକରୁ ବୁଢ଼ାକୁ ତା ଭାଗ ଦେଇ ବାକୀ ଯାହା ବଳେ ସେତକ ଖାଏ । ଯେତେ ଭୋକ ଥିଲେ ମଧ୍ୟ ବୁଢ଼ା ଗଜସ୍ତି ପାଇଁ ଟିକିଏ ଖପରାରେ ନ ରଖି କଦାପି ଉଠେ ନାହିଁ ।

କାଙ୍ଗାଳମାନେ ଅନଛନରେ ଦିନରାତି ରହିବେ—ଗୌରୀକୁ ତାହା ଆଦୌ ପସନ୍ଦ ହେଲା ନାହିଁ । ବୁଢ଼ାକୁ ଛାଡ଼ି ସେ ଅଲଗା ରହିବ କପରି ? ସେ ତ ଛନରେ ପଡ଼ିରହି ଖାଇବ—ବୁଢ଼ାକୁ ଦେଖିବ କିଏ ? ଏଠାରୁ ନ ହେଲେ ଆଉ କେଉଁଠାରୁ ହେଲେ ସେ ମୁଠାଏ ପେଜପାଣି ବା ଅଇଁଠା ଭାତ ମାଗିଆଣି ବୁଢ଼ାକୁ ଦେଇପାରିବ । ତା ଖାଇବାଟା ତ ବେଶି କିଛି ଦରକାର ନାହିଁ; ବୁଢ଼ାକୁ ନିତି ଗଣ୍ଡାଏ କିଛି ଆଣି ଯୋଗାଇବା ଯେ ନିହାତି ଦରକାର । କାମ ଯାହା କରିବାକୁ ପଡ଼ିବ, ସେ ଦିନରେ ତା କରିବାକୁ ରାଜି ଅଛି; କିନ୍ତୁ ବୁଢ଼ାକୁ ଛାଡ଼ି ରାତିରେ ତ ସେ କଦାପି ଅଲଗା ରହିପାରିବ ନାହିଁ ।

ଜଣେ କାରପରଦାର ଏକାନ୍ତରେ ବହୁ ବୁଝାବୁଝି କରାଇବା ପରେ ଠିକ୍ ହେଲା, ଗଙ୍ଗାକୁ ବେଶି ଭତ୍ତା ଦିଆଯିବ । ସେ ରାତ୍ରେ ଅନ୍ତଃପୁରରେ ରହିବ, ସକାଳେ ଜଳଖିଆବେଳେ ଠିକ୍ ସମୟରେ ଯାଇ ବୁଢ଼ାକୁ ଖାଇବାକୁ ଦେଇ ଆସିବ । ଗଙ୍ଗା ଶେଷକୁ ଏ କଥା ପସନ୍ଦ କଲା, ବୁଢ଼ାକୁ ମଧ୍ୟ ବୁଝାବୁଝି କରି ବହୁତ କହିଲା, "ସେ ବାବୁଙ୍କର ଭାରି ଦୟା; ତୁମ କଥା ସେ ବରାବର ପଚାରନ୍ତି । ସମସ୍ତଙ୍କ ସାଙ୍ଗରେ ମୁଁ ସେଠି ରହିଲେ, ସେ ତୁମ ପାଇଁ ଆଉ ବେଶି ଭତ୍ତା ଦେବେ । କାମ ତ ମୋତେ କିଛି ଦେବେ ନାହିଁ ବୋଲି କହୁଥିଲେ; ମୁଁ ମନା କରିଦେଇଛି । ମୁଁ କଣ କୋଢ଼ ହୋଇଛି କି ? ସମସ୍ତେ କାମଦାମ କରିବେ, ମୁଁ ବା ଖାଲିଠାରେ ବସିବି କାହିଁକି ?"

ଗଙ୍ଗାର କଥା ବୁଢ଼ା ଶୁଣିଲା, ମୁହଁ ଟେକି ଥରେ ଗଙ୍ଗାକୁ ଚାହିଁଲା । ତା କୋରଡ଼ରେ ଲାଗି ଥିବା ଅଖି ଦୁଇଟା ଠିକ୍ ଜଳପରି ଜଳି ଉଠିଲା—ସତେ ଯେପରି ଅନ୍ତରଟା ଥରିଯାଉଛି; ମାତ୍ର ତାହା କ୍ଷଣକ ପାଇଁ । ବୁଢ଼ା କୁନ୍ଥେଇ କୁନ୍ଥେଇ କହିଲା, "ହଉ ଯା, ମୁଁ ତ ଉଠିପାରୁ ନାହିଁ; କାଲି ଠିକ୍ ସକାଳ ଆସିବୁ ।"

ଇଚ୍ଛା ଓ ଅନିଚ୍ଛା ଉଭୟର ମଝିରେ ପଡ଼ି ଗଙ୍ଗା ଅନ୍ତଃପୁରକୁ ଗଲା । ସେତେବେଳକୁ ଖାଇବାକୁ ଦିଆଯିବା ପାଇଁ ଆଉ ଦୁଇ ତିନି ଘଣ୍ଟା ବାକୀ ଅଛି । ସ୍ତ୍ରୀ ପୁରୁଷ ସମସ୍ତେ ବଗିଚା କାମରେ ଲାଗିଛନ୍ତି । ଗଙ୍ଗା ମଧ୍ୟ ଯାଇ ଗୋଟାଏ କିଛି କାମ କରିବାରେ ଲାଗିଗଲା । ତାକୁ କିଛି ଭଲ ଲାଗୁ ନାହିଁ—ନିଜକୁ ଭୁଲାଇବାପାଇଁ ସେ ଅନ୍ୟ ସ୍ତ୍ରୀ ଲୋକଙ୍କ ସହିତ ମିଶି ମାଟି ବୋହିଲା ।

ସେ ଦୃଶ୍ୟଟି କାରପରଦାର ଜଣକ ତାକୁ ଦେଖିଲେ । ଠିକ୍ ମୂରୁକି ହସା ଦେଇ ହାକିମୀ ମିଜାଜରେ ସେ ବାଟେ ଚାଲିଗଲେ ।

ଖାଇସାରି ପୂଣି ସମସ୍ତେ କାମରେ ଲାଗିଲେ । କ୍ରମେ ରାତି ହେଲା । ଆଗରୁ ଯେ ଯେଉଁଠି ବସୁଥିଲେ, ସେଠି ଯାଇ ନିଜ ନିଜ ଛିଣ୍ଡା କନାମାନ ପାରି ଶୋଇଲେ । ଝଙ୍କାଳିଆ ଗଛ ଉହାଡ଼ରେ ଯେଉଁଠାରେ ସ୍ତ୍ରୀ ଲୋକମାନେ ରହନ୍ତି, ଗଉରୀ ଯାଇ ସେଠାରେ ନିଜର ଜାଗା ଠିକ୍ କଲା । ଖାଇଲାବେଳେ ତା ପେଟକୁ ମୋଟେ ଭାତ ଗଲା ନାହିଁ । ବୁଢ଼ା ସେଥିଣେ ଉପାସରେ ପଡ଼ି ରହିଥିବ, ସେ ଏଠାରେ ଖାଇବ ବା କିପରି ? ଭାତପାକ ପୁଡ଼ା ବାନ୍ଧିଲା । ସାଙ୍ଗେ ସାଙ୍ଗେ ଯାଇ ବୁଢ଼ାକୁ ଦେଇ ଆସିବ ବୋଲି ସେ କାରପରଦାରଙ୍କ ପାଖରେ ବହୁତ ନେହୁରା ହୋଇ କହିଲା; ମାତ୍ର କାରପରଦାର ମାନିଲେ ନାହିଁ । କିପରି ରାତି ପାହିବ, ସେ ବୁଢ଼ାକୁ ନେଇ ଭାତ ଦେଇ ଆସିବ, ସେଥିପାଇଁ ତା ମନ ଛନ ଛନ ହେଲା ।

ତଦାରଖ କରିବା ପାଇଁ ରାତି ପହରକ ପରେ ଦୁଇଜଣ କାରପରଦାର ଆସି ସମସ୍ତଙ୍କୁ ବୁଲି ଦେଖିଲେ । ଶେଷରେ ପହଞ୍ଚିଲେ ଗଉରୀ ପାଖରେ । ତାକୁ ଟିକିଏ ଛୁଇଁ ନିଦ ହୋଇଯାଇଥିଲା; ଉଠାଇଲେ, କଣ ଅସୁବିଧା ହେଉଛି ବୋଲି ପଚାରିଲେ । ଭୟରେ ଗଉରୀର ମୁଣ୍ଡ ନଇଁଗଲା । ତାପରେ କେତେ କାଙ୍ଗାଳ ବଜାରରେ ବୁଲି ନାହାନ୍ତି ? ତା କଥା ବୁଝିବାପାଇଁ ଏତେ ରାତିରେ ଦୁଇଜଣ ବାବୁ ହାଜର !

କେତେ କଥାବାର୍ତ୍ତା ପରେ ବାବୁମାନେ କହିଲେ, "ତୁ ଆମ ସାଙ୍ଗରେ ଆ, ତୋତେ ଆମେ ଗୋଟାଏ ଭଲ ଜାଗାରେ ରଖାଇ ଦେବୁ, ଭଲ ଲୁଗା ପିନ୍ଧିବାକୁ ଦେବୁ । ତୋର ବୟସ ଅଛି, ଚେହେରା ବି ଅଛି; ତୁ ଏ ମଲାମୁଣ୍ଡିଆ ମାଗିଖିଆଙ୍କ ସାଙ୍ଗରେ କାହିଁକି ପଡ଼ିରହିଛୁ ?"

ଗଜସ୍ତି ମନରେ ପାପ ଛୁଇଁଲା । ଏ କଥା ଶୁଣି ତା ପାଟିରୁ କଥା ବାହାରିଲା ନାହିଁ । କଣ କହିବ ସେ ତା ବୁଝିପାରୁ ନ ଥାଏ ।

ସେ ରାଜି, କିନ୍ତୁ ଲାଜରେ କିଛି କହିପାରୁ ନାହିଁ—ଏହା ଭାବି କାରବାରଦାର ଦୁହେଁ ଏକପ୍ରକାର ଯୋର କରି ତାକୁ ସେଠାରୁ ନେଇଗଲେ । ବାଧା ଦେବାର କ୍ଷମତା ଗଜସ୍ତି ଏକାବେଳକେ ହରାଇ ବସିଥିଲା ।

ରାତି ପାହିଲା, ଦିନ ଦିପହର ହେଲା । ବୁଢ଼ା ଗୋପାଳ ଗଜସ୍ତିକୁ ଗୃହିଁ ଗୃହିଁ ଥକା ହେଲଣି । ଭୋକରେ ପେଟ ଅଉଠି ପାଉଠି ହୋଇ ଯାଉଛି ।

ଅନ୍ନଛତ୍ରରୁ ଯେ ଦୁଇ ଚାରିଜଣ ଲୁଚିଛପି ପଳାଇ ଆସି-ଥିଲେ, ବୁଢ଼ା ତାଙ୍କଠାରୁ ପଚାରି ବୁଝିଲା, ଗଛମୂଳେ ଗଜସ୍ତି ଶୋଇଥିଲା, ରାତି ଅଧରେ ଦୁଇଜଣ ବାବୁଙ୍କ ସାଙ୍ଗରେ ଉଠି କୁଆଡ଼କୁ ଗଲା । କିଛି ସମୟ ପରେ ବହୁ ଦୂରରୁ ଗଜସ୍ତିର କାନ୍ଦ କେବଳ ସେମାନେ ଶୁଣିଛନ୍ତି—ଆଉ କିଛି ଜାଣନ୍ତି ନାହିଁ ।

କେହି କେହି ମଧ୍ୟ ଭାବଭଙ୍ଗିରୁ ପ୍ରକାଶ କରିଦେଲେ, ଆଉ ଗଜସ୍ତି ? ତାର ବୟସ ଅଛି, ରୂପ ଅଛି, ସେ ଏ ମାଗିଖିଆଙ୍କ ସାଙ୍ଗରେ ରହିବ କାହିଁକି ? ବୁଢ଼ାକୁ ପଚାରିବ ବା କାହିଁକି ? ସେ ତ ଏଣିକି ରାଜରାଣୀ ହେବ ।

ବୁଢ଼ା କାନ ସେତେବେଳକୁ ଝାଇଁ ଝାଇଁ ମାରିଯାଉଥାଏ । ଏ ସବୁ କଥା ବୋଧହୁଏ ସେ କିଛି ଶୁଣିପାରୁ ନ ଥାଏ, ଶୁଣିଲେ ବି ବୁଝିବାର କ୍ଷମତା ତାର ସେତେବେଳେ ନ ଥାଏ ।

ମାନ୍ୟବର ଲାଟସାହେବ ହବ୍‌ଡ଼ଭଜନ ବୁଲି ଆସିଥିଲେ । ଆଜି ରାମ୍ବୁ ସାହେବଙ୍କ ଅନ୍ନଛତ୍ର ଦେଖିବାର କଥା । ସେଥିଲାଗି ବହୁତ ରକମର ବନ୍ଦୋବସ୍ତ ଆୟୋଜନ କରାଯାଇଛି । ଶହ ଶହ ଠିକା

ଖରଚ ହୋଇ ଫୁଲ୍‌ମାଳ ଟଙ୍ଗା ହୋଇଛି । ରାସ୍ତା ଘାଟ ପରିଷ୍କାର ଚାଲିଛି । ଆଜି କାଙ୍ଗାଳମାନଙ୍କୁ ଶୀଘ୍ର ଖାଇବାକୁ ଦିଆଯାଇଛି । ବେଶି ଭାତ, ଠାଏ ଦୁଇଠା ତରକାରି ମଧ୍ୟ ହୋଇଛି । କାଙ୍ଗାଳଙ୍କ ଆନନ୍ଦ ଦେଖେ କିଏ ?

ଲାଟ ସାହେବ କାଙ୍ଗାଳ ଭୋଜନ ଦେଖିଲେ । ଗୁପ୍ତ ସାହେବଙ୍କୁ ପ୍ରଶଂସା କରିବା ସାଙ୍ଗେ ସାଙ୍ଗେ କଲେକ୍ଟର ସାହେବଙ୍କ ପାଖରେ ମତ ପ୍ରକାଶ କଲେ, "ଏମାନେ ବେଶ୍ ବଳୁଆ, କାମିକା । କାମ ଦାମ କଲେ ରୋଜଗାର କରିପାରିବେ । ଏପରି ବସି ବସି ଖାଇ ଅଳସୁଆ ହୋଇ ଯାଉଛନ୍ତି, ଏମାନଙ୍କ ନୈତିକ ଅବନତି ଘଟୁଛି । ଏମାନଙ୍କୁ ଖାଇବାକୁ ଦେବା ଦରକାର ନାହିଁ ।"

ଖବରକାଗଜରେ ବିବୃତି ବାହାରିଲା—ଏ ସବ୍‌ଡିଭିଜନରେ ସେପରି କିଛି ଧାନଗୁଞ୍ଜଳର ଅଭାବ ନାହିଁ । ପେଶାଦାର ମାଗିଖିଆମାନେ ମଧ୍ୟ ଖାଇ ପିଇ ବେଶ୍ ହୃଷ୍ଟପୁଷ୍ଟ ଅଛନ୍ତି । ଏ ସବ୍‌ଡିଭିଜନରୁ ବହୁତ ଧାନ ସଂଗ୍ରହ କରାଯାଇ ନିଅଣ୍ଟିଆ ଅଞ୍ଚଳକୁ ପଠାଇବାର ବ୍ୟବସ୍ଥା ହେଉଛି ।

ଆରଦିନଠାରୁ କଲେକ୍ଟର ଓ ସବ୍‌ଡିଭିଜନ ଅଫିସରଙ୍କ ମତରେ ଆଉ ଅନ୍ନଛତ୍ର ଖୋଲା ରହିବା ଦରକାର ବୋଧ ହେଲା ନାହିଁ । ସାଙ୍ଗେ ସାଙ୍ଗେ ତାହା ବନ୍ଦ କରି ଦିଆଗଲା । କାଙ୍ଗାଳମାନେ ନିଜ ଟୋଟାକୁ ବାଧ ହୋଇ ଫେରିଗଲେ । କାରପରଦାରମାନେ କାମରୁ ବରଖାସ୍ତ ହେଲେ ।

ଲାଟ ସାହେବ ବେଶ୍ ଖୁସି ହୋଇ ଯାଇଛନ୍ତି । ଗୁପ୍ତ ସାହେବ ଆଉ କେତେ ଦିନ ପରେ ନୂଆବର୍ଷରେ ଯେ ନିଶ୍ଚୟ ରାୟ ବାହାଦୁର ହେବେ, ଏଥିରେ ସନ୍ଦେହ ନାହିଁ । ସେ ଦିନ ସନ୍ଧ୍ୟାରେ ସେ ସେଠୁ

ସ୍ୱପ୍ନରେ ଯେତେବେଳେ ବିଭୋର, ସେତେବେଳେ ଏଣେ କାଙ୍ଗାଳଥିବା ଛୋଟାରେ ଅସହାୟ ଗୋପାଳ ବୁଢ଼ା ମୃତ୍ୟୁର ଶୁଭମୁହୂର୍ତ୍ତକୁ ଅପେକ୍ଷା ମାନି କରି ଅକାଳକୁ ଗୃହିଁ ପଡ଼ିରହିଛି; ଆଗରେ ଅଲୁଳାୟିତ କେଶ, ବିବସ୍ତ୍ରବସନା, ଧୂଳିଧୂସରିତା ଗଉରୀ ଦେହରେ ଅସହ୍ୟ ମାଡ଼ର ବୋଝଭରି ବୋହି ଛଳକୁ ମୁହଁ ପୋତି ଠିଆ ହୋଇଛି । ଉଭୟଙ୍କ ମଧ୍ୟରେ କାଲି ଯେଉଁ ଘନିଷ୍ଠତା ଥିଲା, ଆଜି ତାହା ଯେପରି ବହୁ ସହସ୍ର ଯୋଜନ ଦୂରକୁ ଦୁଃଖୁଯାଇଛି ।

---

## ସହର ଓ ମଫସଲ

ଉପର ହାକିମଙ୍କଠାରୁ ଆଦେଶ ପାଇ ନିତାନ୍ତ ଅନିଚ୍ଛାସତ୍ତ୍ୱେ ଜଗଦୀଶବାବୁ ମଫସଲକୁ ଯିବାପାଇଁ ଲୁଗାପଟା ବନ୍ଦୋବସ୍ତ କଲେ । ଯେଉଁ ନିପଟ ଧୋଯ୍ୱା ଅଞ୍ଚଳର ସାହାଯ୍ୟ କେନ୍ଦ୍ର । ଆଜନ୍ମ ସହର-ବାସୀ ଜଗଦୀଶ ବାବୁଙ୍କ ପକ୍ଷରେ ସେଠାରେ ଯାଇ କାର୍ଯ୍ୟ କରିବା ଏକପ୍ରକାର ଅସମ୍ଭବ । ଖାଇବା ପିଇବାରେ ଅସୁବିଧା, ସାଙ୍ଗସାଥୀର ଅଭାବ, ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିବାର ସମ୍ଭାବନା; ଏ ସବୁ ସତ୍ତ୍ୱେ ଜଗଦୀଶ ବାବୁ ଆଜି ମଫସଲ ଯିବାକୁ ବାହାରିଛନ୍ତି । ପିଲାଦିନୁ ସେ ନିର୍ଭୀକ, ସ୍ୱାଧୀନ ମତବାଦୀ ବୋଲି ତାଙ୍କର ବେଶ୍ ଖ୍ୟାତି ଥିଲା । ବାପା, ଭାଇଙ୍କ କଥା ସେ ଜୀବନରେ ବହୁତ ଏଡ଼ିଦେଇ ଆସିଛନ୍ତି; ସ୍କୁଲ୍ କଲେଜରେ ଅଧ୍ୟାପକମାନଙ୍କୁ ବେଶ୍ ଫାଙ୍କି ଦେଇ-ଛନ୍ତି । ତଥାପି ଚାକିରିଜୀବନର ପ୍ରଥମ ମୋହରେ ଉପର ହାକିମଙ୍କର ଏ ଅନ୍ୟାୟ ଆଦେଶ ଅମାନ୍ୟ କରିବା ତାଙ୍କ ପକ୍ଷରେ ଏକାବେଳକେ ଅସମ୍ଭବ ବୋଲି ସେ ମନେକଲେ । ସହରର

ସୁଖସ୍ୱାଚ୍ଛନ୍ଦ୍ୟ କେତେଦିନ ପାଇଁ ଅନ୍ତତଃ ବଳିଦେଇ ସେ ନିଜର ବେଶ ପୋଷାକ, ଷ୍ଟୋଭ, ଗୃ ବସ୍‌କୁଟ, ଲୁଗାପଟା ବହୁ ପରିମାଣରେ ଧରି ଏକମାତ୍ର ଚପରାଶି ସହିତ ସହର ଛାଡ଼ିଲେ ।

ଏକାଦିକ୍ରମେ ଛତିଶ ଘଣ୍ଟାକାଳ ରେଲ ଓ ବଳଦଗାଡ଼ିରେ ଯାତ୍ରା କରି ଯେତେବେଳେ ସେ ଗୋପାଳପୁର ସ୍ୱାସ୍ଥ୍ୟ କେନ୍ଦ୍ରରେ ପହଞ୍ଚିଲେ, ସେତେବେଳକୁ ତାଙ୍କ ଦେହ ଓ ମନ ଏକାବେଳକେ ଭାଙ୍ଗିପଡ଼ିଛି । ସେ ସ୍ଥାନର ଅବସ୍ଥା, ଗୃହ ଆଡ଼ର ବାୟୁମଣ୍ଡଳ, ହଜାର ହଜାର ଜୀବନ୍ତ କଙ୍କାଳର ଦୃଶ୍ୟ ତାଙ୍କୁ ଅବଶ କରି ପକାଇଲା । ସେ କେଉଁଠି ଆସି ପହଞ୍ଚିଛନ୍ତି, ଆଖି ଆଗରେ କଣ ଦେଖୁଛନ୍ତି, ଏଠାରେ ତାଙ୍କର କର୍ତ୍ତବ୍ୟ କଣ—ଏହା ସେ କେତେ ସମୟ ପାଇଁ ଆଦୌ ବୁଝିପାରିଲେ ନାହିଁ ।

ଚପରାଶି ଓ ସ୍ଥାନୀୟ ତଳିଆ କର୍ମଚାରୀଙ୍କ ବିରାଟ ମୃତାବକ୍ତ ସେ ନିଜର ନିତ୍ୟକର୍ମ ସାରି ଯେତେବେଳେ ତମ୍ବୁ ଭିତରୁ ବାହାରକୁ ଆସିଲେ, ସେତେବେଳକୁ ତାଙ୍କ ମନ ଓ ଆଖି ଟିକିଏ ସ୍ଥିର ହୋଇ ଯାଇଥିଲା । ତଥାପି ସେ ଆଗରେ ଯେଉଁ ଦୃଶ୍ୟ ଦେଖିଲେ, ତାହା ବିଶ୍ୱାସ କରିବା ତାଙ୍କ ପକ୍ଷରେ ସେତେ ସହଜ ହୋଇଉଠିଲା ନାହିଁ । ଜଗଦୀଶ ବାବୁ ବହୁତ ଉପନ୍ୟାସ ଗଳ୍ପରେ ଗରିବ ଭିକାରୀଙ୍କ କଥା ପଢ଼ିଛନ୍ତି, ସିନେମା ଥିଏଟରରେ ବହୁତ କାଙ୍ଗାଳଙ୍କୁ ଦେଖିଛନ୍ତି, ସହରରେ ମଧ୍ୟ ବହୁତ ମାଗନ୍ତାଙ୍କ ଦୁଃଖରେ ବିଚଳିତ ହୋଇ ସମୟ ସମୟରେ ପଇସା ଅଧଲାଏ ଦେଇଛନ୍ତି; ମାତ୍ର ଏ ଦୃଶ୍ୟ ଯେ ସେ ସବୁର ଏକାବେଳକେ ବାହାରେ । ଏମାନେ ତ ଗରିବ ଭିକାରୀ ନୁହନ୍ତି; ଦାରିଦ୍ର୍ୟର ଏପରି ବିକଟ ନଗ୍ନମୂର୍ତ୍ତି ସେ ତ କେବେ କଳ୍ପନା କରି ନ ଥିଲେ ।

ସେତେବେଳକୁ ମୁଠିଗୁଡ଼ଲ ଦିଆଯାଉଥିଲା । ସେ ଦେଖିଲେ, କେବଳ ଚମ ଘୋଡ଼ଣି କଙ୍କାଳଗୁଡ଼ାଏ ଯେପରି ମେଳହୋଇ ଠେଲା ଓଠେଲି ଲଗାଇଛନ୍ତି ମୁଠାଏ ଗୁଡ଼ଲ ନେବାପାଇଁ । ଗୋଟାଙ୍କ ଉପରେ ଗୋଟାଏ ପଡ଼ି ଯେଉଁ ଅସଭ୍ୟତାର ପରିଚୟ ଦେଉଛନ୍ତି, ତାହା ଜଗଦୀଶ ବାବୁଙ୍କ ମନରେ ଯେପରି ଘୃଣା ଉଦ୍ରେକ କଲା, ସେହିପରି ହୃଦୟ ମଧ୍ୟ ତରଳାଇଦେଲା । ସେ ଅନେକ ସମୟ ଏ ଦୃଶ୍ୟ ଦେଖି ନ ପାରି ଅଜ୍ଞାତରେ ଆଖି ଦୁଇଟା ବୁଜି ଦେଇଥିଲେ ।

ଗୁଡ଼ଲ ମୁଠାଏ ମୁଠାଏ ନେଇ ସମସ୍ତେ ଫେରିଲେ । ଭାତ ରାନ୍ଧିବାକୁ ସମୟ କାହିଁ ? ସାଙ୍ଗେ ସାଙ୍ଗେ କଞ୍ଚା ଗୁଡ଼ଲ ପାଟିରେ ପୂରାଇ ଅନେକେ ଫେରୁ ଫେରୁ ଗୋବାଇବାରେ ଲାଗିଗଲେ । କିଛି ସମୟ ପାଇଁ ସ୍ଥାନଟା ନିରୋଳା ହୋଇଗଲା । ଜଗଦୀଶ ବାବୁ ଦେଖିଲେ, ଯେଉଁଠାରେ କାଙ୍ଗାଳ ଭିଡ଼ ହୋଇଥିଲା, ସେଠାରେ ଗୋଟିଏ ଛୋଟ ପିଲା ପଡ଼ିରହିଛି । ସେ ସମ୍ଭାଳି ନ ପାରି ତା ପାଖକୁ ଗଲେ । ପିଲାଟିର ଶେଷ ସମୟ ଉପସ୍ଥିତ । ଭିଡ଼ବେଳେ ବୋଧହୁଏ ଦୁଇ ଚାରିଜଣ ତାକୁ ମାଡ଼ି ଦଳିଦେଇ ଯାଇଛନ୍ତି । ଜଗଦୀଶ ବାବୁ କଣ କରିବେ ହଠାତ୍ ସେଠି ବସି ପଡ଼ୁଥିଲେ, କେନ୍ଦ୍ରର ପରିଚାଳକ କହିଲେ—ସୌଭାଗ୍ୟର କଥା, ଆଜି ଏ ଗୋଟିଏ ମାତ୍ର ଦେଖାଗଲା ।

ଜଗଦୀଶ ବାବୁ ତା ପର ଦିନ ଟୋଟା ଭିତରକୁ ବୁଲି ବାହାରିଲେ । ଏଠି ସେଠି ହୋଇ ହଜାର ହଜାର ଲୋକଙ୍କ ପୋକ ମାଛି ପରି ପଡ଼ିଥିବାର ସେ ଦେଖି ଚମକିଉଠିଲେ । ମଣିଷ କଣ ଏତେ ଅସହାୟ ହୋଇପାରେ ! ମଣିଷର ଜୀବନ ପ୍ରତି କଣ ଏତେହୂର ହତାଦର, ଏତେହୂର ଅଯତ୍ନ କରାଯାଇପାରେ ? ସାମାନ୍ୟ ଜନ୍ତୁ ପିମ୍ପୁଡ଼ିଟାଏ ଗୋଡ଼ରେ ଦଳିହୋଇଗଲେ ତ ମନ ଟିକିଏ

ହେଲେ ଦବିଯାଏ; କିନ୍ତୁ ଏଠାରେ ଯେ ଏଭେଗୁଡ଼ାଏ ମଣିଷ ପଦବାଚ୍ୟ ଜନ୍ତୁପିଣ୍ଡ ଗୋଡ଼ତଳେ ପ୍ରତି ମୁହୂର୍ତ୍ତରେ ଦଳି ପେଷି ହୋଇଯାଉଛନ୍ତି !

ବାବୁ ଆଉ ଟିକିଏ ଆଗକୁ ଗଲେ । ବୋଧହୁଏ ମାଆଟିଏ— ମୁଣ୍ଡରେ ହାତ ଦେଇ ବସିଛି । ଆଗରେ ତାର ଛୋଟ ପିଲାଟି ଘାସ ଉପରେ ପଡ଼ିରହିଛି । ପାଖରେ ଦୁଇଟା କୁକୁର; ଖଣ୍ଡେ କଣି ଧରି ସେମାନଙ୍କୁ ହୁରୁଡ଼ାଇବାରେ ସେ ବ୍ୟସ୍ତ । ଅଦୂର କିଆବେଢ଼ା ମୂଳେ ଗୋଟାଏ ବିଲୁଆ ମଧ୍ୟ ବଡ଼ ଲୋଲୁପ ଦୃଷ୍ଟିରେ ସେ ଆଡ଼କୁ ଚାହିଁ ରହିଛି ।

ଜଗଦୀଶ ବାବୁ ଦେଖିଲେ, ପିଲାର ପ୍ରାଣବାୟୁ ବହୁତ ଆଗରୁ ଉଡ଼ିଗଲାଣି । ମା ପାଖରେ ବସି ତାକୁ ଆଉଁସି ଦେଉଛି । ମୁଠାଏ ଚାଉଳ ଖଣ୍ଡିଆ କାନାରେ ଆଗରେ ଥୁଆ । ଜଗଦୀଶ ବାବୁ କହିଲେ, "ଆଉ ବସି ରହିଚୁ କାହିଁକି ? ସେ ଯେ ମରିଗଲାଣି । ତାକୁ ନେଇ ଯା, ନଈକୂଳେ ପକାଇଦେଇ ଆସିବୁ ।"

"ମରିଗଲାଣି"—ମା ପାଟିରୁ ଏଇ ପଦକ ମାତ୍ର କଥା ବାହାରିଥିଲା । ତାହା ପରେ ଯାହା ଘଟିଲା, ଜଗଦୀଶ ବାବୁ ଆଉ ସେ ଦୃଶ୍ୟ ଦେଖିପାରିଲେ ନାହିଁ; ଅନ୍ୟ ଆଡ଼କୁ ମୁହଁ କରି ଚାଲିଗଲେ ସେଠୁ ।

ନବୋଳା ଜାଗାରେ ଝଙ୍କାଳିଆ ବୁଦା ଛାଇରେ ବୁଢ଼ାଟିଏ ବସିଛି । ତା କୋଳଉପରେ ଗୋଟିଏ ଛୋଟିଆ ପୁଡ଼ା । ଜଗଦୀଶ ବାବୁଙ୍କୁ ଦେଖି ବୁଢ଼ା ଉଠି ଠିଆହେବ ବୋଲି ଚେଷ୍ଟା କଲା; ମାତ୍ର ପାରିଲା ନାହିଁ । ଜଗଦୀଶ ବାବୁ ଆଗରେ ଟିକିଏ ଠିଆ ହୋଇଯିବାରୁ ବୁଢ଼ା ତାର ସେ ପ୍ରେତମୂହଁରେ ଟିକିଏ ହସ ଫୁଟାଇ

ପୁଡ଼ାଟି ଦେଖାଇ କହୁଥିଲା, "ବାବୁ, ଏ କଣ ଦେଢ଼ସେର ଗୁଡ଼ଲ ହେବ ନାହିଁ ? ପାଞ୍ଚଦିନ ହେଲଣି, ମୁଁ ସାଇତି ରଖୁଛି । ଏତକ ପାଇଲେ ସେ ନିଶ୍ଚୟ ମୋ ଗେଲିକୁ ଫେରାଇଦେବ !"

ବୁଢ଼ାଟି ପାଗଳ ବୋଲି ଜଗଦୀଶ ବାବୁ ଅନୁମାନ କଲେ । ତଥାପି ତା କଥା ଜାଣିବା ପାଇଁ କହିଲେ, "ତୋ ଗେଲି କାହିଁ ?" ପେଟ ବଳକଳରେ କୌଣସି ଅସତ୍ ଉଦ୍ଦେଶ୍ୟରେ ବୁଢ଼ା ଯେ ତାର ଷୋଡ଼ଶୀ ଝିଅକୁ ପରକୁ ବିକି ଦେଇଛି, ତାହା ବୁଝିବାକୁ ବାକି ରହିଲା ନାହିଁ । ସେଥିପାଇଁ ତାଙ୍କ ମନରେ ମଧ୍ୟ ଏ ମଫସଲର ମୂର୍ଖଙ୍କ ପ୍ରତି ଟିକିଏ ତାଚ୍ଛଲ୍ୟ ଖେଳିଯାଇଥିଲା । ମାତ୍ର ଶୁଣିଲେ, ଗେଲି କେବଳ ଅଢ଼େଇବର୍ଷର ଝିଅ । ନିଜର ପୋଡ଼ା ପେଟକୁ ନ ସମ୍ଭାଳି, ତାକୁ କିଛୁ ଖାଇବାକୁ ଦେଇ ନ ପାରି କ୍ଷଣିକ ଦୁର୍ବଳତାରେ ବୁଢ଼ା ତାକୁ କୋଶେ ଦୂର ଗାଁରେ ବିକିଦେଇ ଦେଢ଼ସେର ମାତ୍ର ଗୁଡ଼ଲ ଆଣିଥିଲା । ବୁଢ଼ା କହିଲା, "ମୋର ତ ବୁଢ଼ୀ ଗୁଡ଼ିଲ ନାହିଁ ଅଧୋର ବାସ । ସେଠାରେ କି ଗେଲି ଭଳିଆ ଝିଅ ରହିବା ସାଜେ ? ତା ମା ଯାଇଥିଲା, ତାର ଦୁଇଟି ଭାଇ ଗଲେ; ଶେଷକୁ ତାକୁ ଅନ୍ତତଃ ଏ ଦୁନିଆରେ ଆଉ କେତୁଟା ବର୍ଷ ରଖିବା ପାଇଁ ମୁଁ ଗୋଟାଏ ଲୋକକୁ ବିକିଦେଲି । କଣ କରିବି ବାବୁ, ମୋ ମନ ଯେ ଆଉ ଥୟ ହେଉ ନାହିଁ । ଗେଲି ତ ଆଉ କାହାକୁ ଚିହ୍ନି ନାହିଁ । ମୋ କୋଳ ଛାଡ଼ି ସେ ତ ଆଉ କାହା କୋଳକୁ ଯାଉ ନ ଥିଲା । ସେଠାରେ ସେ କେତେ କାନ୍ଦୁ ନ ଥିବ ? ମୁଁ ଚଣ୍ଡାଳ କାହିଁକି ତାକୁ ପାଖଛଡ଼ା କଲିଟି ? ତା କାନ୍ଦ ସବୁବେଳେ ମୋ କାନକୁ ଶୁଭୁଯାଉଛି; ତା ମୁହଁ, ତାର କୁନ୍ଥ କୁନ୍ଥ ଆଖି ମୋତେ କେତେବେଳେ କେମିତି ଦିଶିଯାଉଛି । ମୁଁ ଯାହା ଗୁଡ଼ଲ ପାଉଛି, ତାକୁ ନ ଖାଇ ଏକାଠି ରଖୁଛି । ଦେଢ଼ସେର ହେଲେ ଦେଇ ଝିଅକୁ ମୋର ଫେରାଇ

ଅଣିବ । ସେ କଣ ମୋ ଝିଅକୁ ଫେରାଇଦେବ ନାହିଁ ବାବୁ ? ସେ ମୋ ଝିଅକୁ ରଖି କଣ କରିବ ?"

ଜଗଦୀଶ ବାବୁଙ୍କ ଅନ୍ତର ସହାନୁଭୂତିରେ ପୂରି ଉଠିଲା । ସେ ଯେ କଣ ସାନ୍ତ୍ୱନା ଦେବେ ସେଥିପାଇଁ ଭାଷା ପାଇଲେ ନାହିଁ । ଅନ୍ୟମାନେ କାଲେ ବୁଢ଼ାଠାରୁ ଗୁଡ଼ିଲତକ ଛଡ଼ାଇନେବେ ବା ଶ୍ରୀଚରଣର ନେଇଯିବେ, ସେଇ ଭୟରେ ବୁଢ଼ା ଏତେ ଦୂରରେ ଏଠାରେ ଏକୁଟିଆ ପଡ଼ିରହିଛି; ଗୁଡ଼ିଲ ପୁଡ଼ାଟିକୁ ନିଜର ପ୍ରାଣ ଅପେକ୍ଷା ଅଧିକ ଯତ୍ନରେ ଯେ ଯାକି ଧରିଛି—ତାହା ବୁଝିବାକୁ ଅଜ ବାବୁଙ୍କର ବାକି ରହିଲା ନାହିଁ । ସେ ପକେଟରୁ ରୁମାଲ କାଢ଼ି ମୁହଁ ପୋଛୁ ପୋଛୁ ଆଗକୁ ଚାଲିଲେ ।

ଆଉ ଗୋଟିଏ ଦୃଶ୍ୟ ଜଗଦୀଶ ବାବୁଙ୍କ ଆଖି ଟାଣିନେଲା । ଗୋଟିଏ ବୁଢ଼ୀ ଗୁଡ଼ାଏ ଗୋବର ନିଜର ଦେଢ଼ ହାତ ଲମ୍ବା ଛିଣ୍ଡା ଦରଭି କାନରେ ବଡ଼ ଯତ୍ନର ସହିତ ଟୁଳାଉଛି । ଗୋବର ସେ କଣ କରିବ, ତା ଜାଣିବାପାଇଁ ବାବୁଙ୍କର ଆଗ୍ରହ ହେଲା । ସେ ଯାଇ ବୁଢ଼ୀ ପାଖରେ ଠିଆହେଲେ; ମାତ୍ର ବୁଢ଼ୀଟି ତାଙ୍କୁ କିଛି ମାତ୍ର ନ କହି ନିଜ କାମରେ ଲାଗିଥାଏ । ଶେଷକୁ ବାବୁ ଅଜ ସମ୍ଭାଳି ନ ପାରି ମନ କଥା ପଚାରିଲେ । ସେ ଜବାବ ଦେଲା, "ବାବୁ, ଏ ଯେ ଷଣ୍ଢ ଗୋବର । ଏହାକୁ ପାଣିରେ ଧୋଇଲେ କଞ୍ଚା ମାଣ୍ଡିଆ ମିଳିବ, ଓଳିଏ ତ ମୋର ଚଳିଯିବ ।"

ଷଣ୍ଢ ମାଣ୍ଡିଆ କିଆରୁ କଞ୍ଚା ମାଣ୍ଡିଆ ଖାଇଛି, ତା ଗୋବରରେ ସେଇ ଗୋଟା ମାଣ୍ଡିଆ ଅନ୍ତତଃ କେତେକ ପରିମାଣରେ ମିଳିବ । ମଣିଷ ନିଜ ପେଟର ଦାଉ ସମ୍ଭାଳିବାକୁ ଯେ ସେ ଗୋବରର ଆଶ୍ରା ନେଉଛି—ଏହା ନିଜ ଆଖିରେ ନ ଦେଖିଥିଲେ ଜଗଦୀଶ ବାବୁ କଦାପି କଳ୍ପନା କରିପାରି ନ ଥାନ୍ତେ ।

କ୍ରମେ ସନ୍ଧ୍ୟା ହୋଇଆସିଲା । ତୋଠ'ର ସେପାଖ ପର୍ଯ୍ୟନ୍ତ ଯିବାକୁ ସ୍ଥିର କରି ଜଗଦୀଶ ବାବୁ ଆଗକୁ ଆଗକୁ ଚାଲିଲେ । ସେ ଯେତେ ଏ ଦୃଶ୍ୟ ଦେଖୁଥିଲେ ସେତେ ତାଙ୍କ ମନ ବଢ଼ିଯାଉ ଥିଲା; ତଥାପି ସେଥିରୁ ନିରସ୍ତ ହୋଇ ଫେରିବାକୁ ମନ ହେଉ ନ ଥିଲା । ସତେ ଅବା ଗୋଟାଏ ନିଶା ଧାରିଛି ।

ଜଗଦୀଶ ବାବୁଙ୍କ ମନରେ ଖେଳିଲା, ଏ ଜାଗାଟା ସାକ୍ଷାତ ଶ୍ମଶାନ; ଭୂତ ପ୍ରେତ ଗୁରିଆଡ଼େ କାଉବାଉ, ସେ ତାଙ୍କ ମଝିରେ ଭୂତପତି ମହାଦେବଙ୍କ ପରି ନିର୍ଭୟରେ ବିଚରଣ କରୁଅଛନ୍ତି । ଏଠି ସେଠି ହୋଇ କେତେ ଯେ କଙ୍କାଳ ପଡ଼ିରହିଛି ତାର ସୀମା ନାହିଁ । ଘାସ ଶୁଖି ହୋଇଥିବା ହାଡ଼େ ଓସାର ରାସ୍ତାର ଟିକିଏ ଏପାଖ ସେପାଖକୁ ପାଦ ପଡ଼ିଲେ ଗୋଡ଼ତଳେ ଏହି ମହା-ପ୍ରାଣୀରୁ କେତେକ ଦଳି ହୋଇଯିବା ଅସମ୍ଭବ ନୁହେ । ଏକପ୍ରକାର ସେମାନଙ୍କୁ ଗୋଡ଼ରେ ଆଡ଼େଇ ଆଡ଼େଇ ଆଗକୁ ଚାଲିବାକୁ ପଡ଼ୁଛି ।

କ୍ରମେ ତୋଠା ପାର ହୋଇ ଜଗଦୀଶ ବାବୁ ଗୋଟାଏ ଗାଁରେ ଯାଇ ପହଞ୍ଚିଲେ । ଗାଁ ଦାଣ୍ଡ ଏବଂ ଦୁଇ ପାଖରେ ଠିଆ ହୋଇଥିବା ଘରର ଅବସ୍ଥା ଦେଖି ସେ ବୁଝିପାରିଲେ, ଗାଁର ଲୋକ ବହୁ ଦିନୁ ଘର ଛାଡ଼ି ପଳେଇ ଯାଇଛନ୍ତି । ଗାଁଟା ଯେ ମଶାଣିରେ ପରିଣତ ହୋଇଯାଇଛି—ଏହି କଥା ଭାବି ସେ ଅନ୍ୟମନସ୍କ ଭାବରେ ବାଟ ଚାଲୁଛନ୍ତି, ଏହି ସମୟରେ ଗୋଟିଏ ଦଶ ବାରବରଷର ଜୀର୍ଣ୍ଣ ବାଳକ ଦଉଡ଼ି ଆସି କହିଲା, "ବାବୁ, ଟିକିଏ ଆମ ଦାଣ୍ଡକୁ ଆସ । ବୋଉ ଡାକୁଛି ।" ପିଲାର ଅବସ୍ଥା, ଚେହେରା, ତାର ବିକଳ ଅନୁନୟ ସହି ନ ପାରି ବାବୁ ପିଲା ସହିତ ତାଙ୍କ ଘରଆଡ଼କୁ ଗଲେ । ଦାଣ୍ଡରେ ଠିଆହେବା ମାତ୍ରକେ କବାଟର ଅଳ୍ପ ଫାଙ୍କରେ

ଗୋଟିଏ ସ୍ତ୍ରୀ ମୁହଁ ଦେଖାଇ କହିଲା, "ସମସ୍ତେ ଗୁଜୁଳ ପାଉଛନ୍ତି । ମୋର କପାଳ ଖରାପ; ମୁଁ ଗୁଜୁଳ ଆଣିପାରୁ ନାହିଁ । ସ୍ୱାମି ଯାହା ମୁଠାଏ ଅଣୁଛି, ସେ ତ ତା ପେଟକୁ ନିଅଣ୍ଟ । ପିଲାଟା—ସେ ବା କଣ କରିବ ? ଧନେ ଧନେ ସେ ଗୁଜୁଳ ଅଣୁ ଅଣୁ ଅଉମାନେ ତାଠାରୁ ଛଡ଼େଇ ନେଉଛନ୍ତି ।"

ସେ କାହିଁକି ଗୁଜୁଳ ଅଣୁ ନାହିଁ ବୋଲି ପଗ୍ଭରି ଜଗଦୀଶ ବାବୁ ବୁଝିଲେ ଯେ, ସେ ବ୍ରାହ୍ମଣଘର ବୋହୂ । ତାର ହାତେ ହେଲେ ଲୁଗା କନା ନାହିଁ । ସେ କେଉଁଥିରେ ଦେହକୁ ଟିକିଏ ତାଙ୍କିଲେ ସିନା ପଦାକୁ ବାହାରିବ ! "ଅଚ୍ଛା, ଲୁଗା ପଠାଇ ଦେଉଚି" କହି ଜଗଦୀଶ ବାବୁ ସେଠାରୁ ଫେରିଲେ ।

ଆଉ ଗୋଟିଏ ଭଙ୍ଗା ଘରୁ କଣ ଖସ ଖସ ଶବ୍ଦ ଆସୁଥିବାର ଶୁଣାଗଲା । ହୁଏ ତ ଘରର ମାଲିକ ଘର ଛାଡ଼ି ଗୁଲି ଯାଇଛି, କୁକୁର ବିଲୁଅ ଘର ଭିତରେ ବାସ କଲେଣି—ଭାବି ସେ ସେଠାରୁ ଗୁଲି ଆସୁଥିଲେ । ମାତ୍ର 'ବାପା, ବାପା' ବୋଲି ଗୋଟିଏ କରୁଣ ଶବ୍ଦର ଡାକ ଶୁଣି ତାଙ୍କର ଭ୍ରମ ଭାଙ୍ଗିଗଲା । ସେ ଘର ଭିତରେ ପଶି ଦେଖିଲେ, ଗୁରିଆଡ଼ ବିକଟ ଅନ୍ଧକାର ।

ଜଗଦୀଶ ବାବୁ ହାତରେ ଥିବା ଟର୍ଚ୍ଚ ମାରିଲେ; ଘରଟା ହଠାତ୍ ଉଜ୍ଜ୍ୱଳ ଆଲୋକରେ ଆଲୋକିତ ହୋଇ ଉଠିଲା ।

ଅଣ୍ଟାଠାରୁ ଖଣ୍ଡେ ଶତଛିନ୍ନ କନା ଗୁଡ଼ାଇ ଗୋଟିଏ ସ୍ତ୍ରୀଲୋକ ଘର ମଝିରେ ବସିଛି । ତାର ରୂପ, ଭେକ ଓ ମୁହଁରୁ ବୟସ ଠଉରେଇବା ଅସମ୍ଭବ । ପାଖରେ ଗୋଟିଏ ଲୋକ ଛିଣ୍ଡା ମସିଣାଟାଏ ଦେହରେ ପକାଇ ଶୋଇଛି; ମାଂସ ଶୂନ୍ୟ ପାଣ୍ଡୁର ମୁହଁଟି ପଦାକୁ ବାହାରିଛି ମାତ୍ର । ଜଗଦୀଶ ବାବୁ ଏ ଦୁଇଜଣଙ୍କ ଅବସ୍ଥା, ବସିବା

ଶୋଇବାର ଭଙ୍ଗି ଦେଖି ଅନୁମାନ କଲେ, ଗୋଟିଏ ଭାଗ୍ୟହୀନ ଦମ୍ପତି । ଏତେ କଷ୍ଟ ସତ୍ତ୍ୱେ ଏମାନେ ଯେ କାହିଁକି ଘର ଛାଡ଼ି ନାହାନ୍ତି, ତାହା ସେ ଭାବିପାରିଲେ ନାହିଁ ।

ଘରେ ଆଲୁଅ ପଡ଼ିବାରୁ ସ୍ତ୍ରୀ ଲୋକଟି ଏକାବେଳକେ ଚମକି ଉଠିଲା । ଜଣେ ବାବୁ ହଠାତ୍ ଆଗରେ ଠିଆ ହୋଇଯିବା ଦେଖି ସେ ପ୍ରଥମେ ଡରିଗଲା, ତା ପରେ ଧୈର୍ଯ୍ୟ ଧରି ଦୁଇ ହାତରେ ଛାତିକୁ ଚାପି କହିଲା, "ଦୁଇ ଦିନ ହେଲା ଗୁଞ୍ଜଳପାଇଁ ଯାଇପାରୁ ନାହିଁ । ବାପାଙ୍କୁ ଭାରି ଜର, ମୁଁ ଛାଡ଼ି ଯିବି କେମିତି ?"

ଜଗଦୀଶ ବାବୁ ନିଜ କାନ୍ଧରୁ ଆଲୁଆନ କାଢ଼ି ସେ ଦୁଇଜଣ ଏକାଠି ଘୋଡ଼ାଇ ହେବା ଉଦ୍ଦେଶ୍ୟରେ ଯାଚୁଥିଲେ, ଏହି ସମୟରେ ତାଙ୍କ ପିଠିରେ ଯେପରି ଗୁରୁବିକ ବସିଗଲା । ନିଜକୁ ସମ୍ଭାଳି ନେଇ ସେ କହିଲେ, "ଏ ଆଲୁଆନ ନେ, ତୁ ଦେହରେ ପକା ।"

ସ୍ତ୍ରୀଟି ବଡ଼ ସଙ୍କୋଚରେ କହିଲା, "ସେଇଟା ବାପାଙ୍କୁ ଦିଅ, ତାଙ୍କ ଜର ଦେହକୁ ଶୀତ ବେଶି ହେଉଛି ।"

ଆଲୁଆନଟି ବୁଢ଼ା ଉପରେ ପକାଇଦେଇ ଜର ପରୀକ୍ଷା କରିବା ପାଇଁ ବାବୁ କପାଳରେ ହାତ ଦେଇ ଦେଖିଲେ, ମୁଣ୍ଡ ବରଫ ପରି ଥଣ୍ଡା । ଟିକିଏ ହଲାଇ ଦେବାରୁ ସମଗ୍ର ଶରୀର ମସିଣା ଭିତରେ ହଲିଗଲା । ସନ୍ଧ୍ୟା ପୂର୍ବରୁ ଶେଷ ନିଶ୍ୱାସ ଛାଡ଼ି ବୁଢ଼ା ପେଟର ଦାଉରୁ ରକ୍ଷାପାଇଛି ଅନ୍ଧ ଅନ୍ଧାରରେ ଝିଅଟି ଏ ପର୍ଯ୍ୟନ୍ତ ସୁଦ୍ଧା ତାହା ଜାଣିପାରି ନାହିଁ—ଏହା ବୁଝିବାକୁ ଆଉ ବାକୀ ରହିଲା ନାହିଁ ।

ଜଗଦୀଶ ବାବୁ କିଛି ନ କହି ସେଠାରୁ ଫେରି ପଡ଼ିଲେ ।

ମାସକ ପରର କଥା । ସାହାଯ୍ୟ କେନ୍ଦ୍ରର ଅବସ୍ଥା ବର୍ଣ୍ଣନା କରି ଜଗଦୀଶ ବାବୁ ସରକାରଙ୍କଠାରୁ ବେଶି ସାହାଯ୍ୟ ପାଇବା

ଅଣାରେ ଉପରସ୍ଥ କର୍ମଚାରୀଙ୍କୁ ଲେଖିଲେ, "ଏଠାର ଅବସ୍ଥା ଅତି ଶୋଚନୀୟ । ଯାହା ପଶୁ ମଧ ଖାଇବେ ନାହିଁ, ତାହା ମନୁଷ୍ୟର ଖାଦ୍ୟ ହୋଇଛି । ଯେଉଁମାନେ ବଳୁଆ ଶ୍ରମିକ ଥିଲେ, ସେମାନେ ଏଇ କେତୋଟା ଦିନରେ ଅସ୍ଥିକଙ୍କାଳସାର ହୋଇ ଭୂତ ପ୍ରେତ ସମ ଏଠି ସେଠି ବୁଲୁଛନ୍ତି । ଗଛର କାଳର ଶୁଖିଲା ପତ୍ର ପରି କେତେ ଯେ ଅକାଳରେ ଝଡ଼ି ପଡ଼ୁଛନ୍ତି, ତାର ସୀମା ନାହିଁ ।" *

ଉପରୁ ସାହାଯ୍ୟ ତ ଆସିଲା ନାହିଁ; ଜଗଦୀଶ ବାବୁ ଅନଧିକାର ଚର୍ଚ୍ଚା କରିଥିବାରୁ ତାଙ୍କୁ ସେ ସ୍ଥାନ ଛାଡ଼ି ସହରକୁ ଫେରିଯିବା ପାଇଁ ଆଦେଶ ଆସିଲା । ତାର ଗୁରୁତର ଚିଠି ଲେଖାଲେଖି ପରେ ଶେଷକୁ ଜଗଦୀଶ ବାବୁ ହାକିମଙ୍କୁ ଜଣାଇ ଦେଇଥିଲେ, "ବେଶି ପରିମାଣରେ ସାହାଯ୍ୟ ଏଠାକୁ ଆସିବା ନିତାନ୍ତ ଦରକାର । ତାହା ଯଦି ନ ହୁଏ, ତେବେ ମୋତେ ଦୁଇମାସ ଅନ୍ତତଃ ଛୁଟି ମିଳୁ । ମୋର ଏ ଅନୁରୋଧ ରକ୍ଷା ନ ହେଲେ, ମୁଁ ଇସ୍ତଫା ଦେବାକୁ ବୋଧହୁଏ ବାଧ୍ୟ ହେବ ।"

---